# ବ୍ୟାଙ୍କ ଘରୋଇକରଣ କାହା ସ୍ୱାର୍ଥରେ ?



ସୌରୀବନ୍ଧୁ କର

# ବ୍ୟାଙ୍କ କ୍ଷେତ୍ରରେ ସଂସ୍କାର ପାଇଁ ନରସିଂହମ୍ କମିଟି : ଏକ ଦୃଷ୍ଟିପାତ

ଭାରତର ବିଭିନ୍ନ ସରକାରୀ ଉଦ୍ୟୋଗରେ ଥିବା ବ୍ୟାଙ୍କଗୁଡ଼ିକର ସଂସ୍କାର ପାଇଁ ବିଭିନ୍ନ ସମୟରେ କେନ୍ଦ୍ରରେ ଅବସ୍ଥାପିତ ହେଉଥିବା ସରକାରମାନେ କମିଟି ଓ କମିଶନ ବସାଉଛନ୍ତି । ଏହି କମିଟି ଓ କମିଶନ ବ୍ୟାଙ୍କ ଶିଳ୍ପ ସମ୍ପର୍କରେ ଅନୁଧ୍ୟାନ କରି ସେମାନଙ୍କର ମତାମତ ଓ ପ୍ରସ୍ତାବ ଦେବାକୁ କୁହାଯାଉଛି । ଏବେ ଏପରି ଏକ କମିଟି ତାଙ୍କର ରିପୋର୍ଟ ସରକାରଙ୍କୁ ଦେଇଛନ୍ତି । ଏହି କମିଟି ହେଉଛି ନରସିଂହମ୍ କମିଟି ୨ୟ । ୧ମ ନରସିଂହମ୍ କମିଟି ରିପୋର୍ଟ ନରସିଂହ ରାଓ ପ୍ରଧାନମନ୍ତ୍ରୀ ଥିବାବେଳେ ଦେଇଥିଲେ । ୨ୟ ନରସିଂହମ୍ କମିଟି ସଂଯୁକ୍ତ ମୋର୍ଚ୍ଚା ସରକାର ଥିବାବେଳେ ଶ୍ରୀ ପି. ଚିଦାମ୍ବରମ୍ ଅର୍ଥମନ୍ତ୍ରୀ ଏହାକୁ ନିଯୁକ୍ତ କରିଥିଲେ । ତା.୨୮।୪।୯୮ରିଖ ଦିନ ୨ ନରସିଂହମ୍ କମିଟି ରିପୋର୍ଟ ସରକାରଙ୍କ ନିକଟରେ ବର୍ତ୍ତମାନ ଅର୍ଥମନ୍ତ୍ରୀଙ୍କଠାରେ ଉପସ୍ଥାପିତ କରାଯାଇଛି । ସରକାରଏହି ରିପୋର୍ଟକୁ ଅନୁଧ୍ୟାନ କରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ବୋଲି ବର୍ତ୍ତମାନର ଅର୍ଥମନ୍ତ୍ରୀ ଘୋଷଣା କରିଛନ୍ତି । ନୂତନ ରିପୋର୍ଟ ପୁରୁଣା ରିପୋର୍ଟର ପ୍ରାୟତଃ ସମସ୍ତ ପ୍ରସ୍ତାବକୁ ଦୋହରାଇଛି ।

ନରସିଂହମ୍ କମିଟି ୨ୟଙ୍କର ରିପୋର୍ଟଟି କ'ଣ, ଏହା ପ୍ରତ୍ୟେକ ଜନସାଧାରଣ ଜାଣିବା ଦରକାର । ଏହି ରିପୋର୍ଟରେ ବିଭିନ୍ନ ବ୍ୟାଙ୍କ ମିଶ୍ରଣକୁ ପ୍ରୋତ୍ସାହନ ଦିଆଯାଇଛି । କୁହାଯାଇଛି ଯେ, ଯେଉଁ ବ୍ୟାଙ୍କଗୁଡ଼ିକ ଶକ୍ତିଶାଳୀ ରହିଛନ୍ତି ସେହିମାନଙ୍କ ମଧ୍ୟରେ ମିଶ୍ରଣ ହେବା ଉଚିତ୍ । ୧୯୬୯ ମସିହାରେ ବ୍ୟାଙ୍କ ଜାତୀୟକରଣ ହେବା ପରେ ୧୯୭୦ ମସିହାରେ କୁହାଯାଇଥିଲା ଯେ, ପ୍ରତ୍ୟେକ ସରକାରୀ ଉଦ୍ୟୋଗ ବ୍ୟାଙ୍କ ନିଜ ନିଜ ମଧ୍ୟରେ ପ୍ରତିଯୋଗିତା କରିବା ପାଇଁ ପ୍ରତ୍ୟେକଙ୍କର ଅସ୍ତିତ୍ୱ ରହିବା ଆବଶ୍ୟକ । ସୁସ୍ଥ ପ୍ରତିଯୋଗିତା ଏହି ବ୍ୟାଙ୍କଗୁଡ଼ିକର ଅଭିବୃଦ୍ଧିରେ ସାହାଯ୍ୟ କରିବ ଏବଂ ସେହି ସମୟରେ ମଧ୍ୟ କମିଟି ବସାଯାଇଥିଲା ଓ କମିଟିମାନେ ସରକାରୀ ଉଦ୍ୟୋଗ ବ୍ୟାଙ୍କଗୁଡ଼ିକୁ ନ ମିଶାଇବା ପକ୍ଷରେ ମଧ୍ୟ ପ୍ରସ୍ତାବ ଦେଇଥିଲେ ।

୧୯୭୦ ଠାରୁ ୧୯୯୦ ଯାଏ ମିଶ୍ରଣ ସମ୍ପର୍କରେ ସପକ୍ଷ ମତ ନଥିଲେହେଁ ପରିବର୍ତ୍ତିତ ପରିସ୍ଥିତିରେ ନ୍ୟୁ ବ୍ୟାଙ୍କ୍ ଅଫ୍ ଇଣ୍ଡିଆକୁ ପଞ୍ଜାବ ନ୍ୟାସନାଲ୍ ବ୍ୟାଙ୍କ ସହିତ ଓ ଲକ୍ଷ୍ମୀ କମର୍ସିଆଲ ବ୍ୟାଙ୍କ୍‌କୁ କାନାରା ବ୍ୟାଙ୍କ ସହିତ ମିଶ୍ରଣ କରାଯାଇଥିଲା । ଏହି ମିଶ୍ରଣ ଫଳରେ ଯେଉଁ ଅବସ୍ଥା ସୃଷ୍ଟି ହୋଇଥିଲା, ସେ ସମ୍ପର୍କରେ ସରକାର ସଚେତନ ଥିବାପରି ଅନୁମାନ କରାଯାଏ ନାହିଁ । ଯଦି ସଚେତନ ଥା'ନ୍ତେ, ତେବେ ପୁନରାୟ ନରସିଂହମ୍ କମିଟି ମିଶ୍ରଣ ସପକ୍ଷରେ ମତପ୍ରକାଶ କରିନଥାନ୍ତେ ।

ଅନ୍ୟ ଏକ ପ୍ରସ୍ତାବରେ କୁହାଯାଇଛି ଯେ, ଦୁର୍ବଳ ବ୍ୟାଙ୍କଗୁଡ଼ିକ ଚିହ୍ନଟ କରି ବନ୍ଦକରିଦେବା ଉଚିତ ଏବଂ କେତେକ ବ୍ୟାଙ୍କ କେବଳ ଜମା ସଂଗ୍ରହ କରିବେ କିନ୍ତୁ ଋଣ ଆଦୌ ଦେବେନାହିଁ । ଏହା ଏକ ମାରାତ୍ମକ ପ୍ରସ୍ତାବ । ବ୍ୟାଙ୍କଗୁଡ଼ିକ ଦୁର୍ବଳ ହେଉଥିବାର କାରଣ ଅନୁଧାନ କରିବା ଉଚିତ୍ ଏବଂ କିପରି ଏହି ବ୍ୟାଙ୍କଗୁଡ଼ିକୁ ସବଳ କରାଯାଇପାରିବ ଓ ଥଇଥାନ କରାଯାଇପାରିବ, ସେ ସମ୍ପର୍କରେ ଆଲୋଚନା ଓ ପର୍ଯ୍ୟାଲୋଚନା ହେବା ଆବଶ୍ୟକ ।

୨/୩ଟି ଆନ୍ତର୍ଜାତିକ ବ୍ୟାଙ୍କ, ୮/୯ଟି ଜାତୀୟ ବ୍ୟାଙ୍କ ଓ କେତେଗୁଡ଼ିଏ ବୃହତ୍ ଆଞ୍ଚଳିକ ବ୍ୟାଙ୍କ ସହିତ ଲୋକାଲ୍ ବ୍ୟାଙ୍କ ରଖାଯିବାର ପ୍ରସ୍ତାବ ଦିଆଯାଇଛି । ବଡ଼ ବଡ଼ ୨/୩ଟି ଆନ୍ତର୍ଜାତିକ ବ୍ୟାଙ୍କ ପ୍ରତିଷ୍ଠା କରିବାର ଆବଶ୍ୟକତା ନାହିଁ । ବର୍ତ୍ତମାନ ଥିବା ଷ୍ଟେଟ୍ ବ୍ୟାଙ୍କ ପରି ବୃହତ୍ ବ୍ୟାଙ୍କ ଆନ୍ତର୍ଜାତିକ ପ୍ରତିଷ୍ଠା ପାଉଥିବାବେଳେ ପୁନର୍ବାର ଏପରି ବ୍ୟାଙ୍କ ପ୍ରତିଷ୍ଠାର ଆବଶ୍ୟକତା ସମ୍ପର୍କରେ ପ୍ରଶ୍ନ ଉଠିବା ସ୍ୱାଭାବିକ । ଗ୍ରାମାଞ୍ଚଳରେ ଗ୍ରାମ୍ୟ ବ୍ୟାଙ୍କମାନେ ଥିବାବେଳେ ପୁଣି ରିଜିଓନାଲ ବ୍ୟାଙ୍କ ଓ ରୁରାଲ ବ୍ୟାଙ୍କ ଖୋଲିବା କେବଳ ଅର୍ଥନୈତିକ ବ୍ୟବସ୍ଥାରେ ଆଞ୍ଚ ଆଣିବ ।

ଆଉ ଏକ ପ୍ରସ୍ତାବ ହେଉଛି ବ୍ୟାଙ୍କଗୁଡ଼ିକର ମୂଳ ଜମା (କ୍ୟାପିଟାଲ)ରେ ବୃଦ୍ଧି କରିବା । ଜାତୀୟକରଣ ବ୍ୟାଙ୍କଗୁଡ଼ିକ ସରକାରୀ ବ୍ୟାଙ୍କ । ଏହାର କ୍ୟାପିଟାଲ୍ ଆଡ଼ିକ୍ୱେସି ନର୍ମ ବୃଦ୍ଧି କେଉଁଥିପାଇଁ ଦରକାର ତାହା ବୁଝା ପଡୁନାହିଁ ।

ନରସିଂହମ୍ କମିଟି ବ୍ୟାଙ୍କ ସଂସ୍କାର ସମ୍ପର୍କରେ ବହୁକଥା ଉଲ୍ଲେଖ କରିଥିଲେ ମଧ୍ୟ ବ୍ୟାଙ୍କରେ ଦେଖାଦେଇଥିବା ଅନାଦେୟ ଋଣ (ଏନ.ପି.ଏ.) ସମ୍ପର୍କରେ କିଛି କହିନାହାନ୍ତି । ବ୍ୟାଙ୍କରେ ଥିବା ୪୩ ହଜାର କୋଟି ଟଙ୍କାର ଅନାଦେୟ ଋଣ

ବଡ଼ ବଡ଼ ଶିଳ୍ପପତିମାନଙ୍କ ନିକଟରେ ରହିଥିବାବେଳେ ସେମାନେ ଆର୍ଥିକ ସଂଯମତା ଅବଲମ୍ବନ ନକରି ବିଶାଳ ସୁରମ୍ୟ ଅଟ୍ଟାଳିକାଠାରୁ ଜେଟ୍ ବିମାନ କିଣିବାରେ ସମୟ ବିତାଉଛନ୍ତି । ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆ ବା ଅର୍ଥ ମନ୍ତ୍ରଣାଳୟ ଏ ସମ୍ପର୍କରେ ମଧ୍ୟ ନୀରବତା ଅବଲମ୍ବନ କରୁଛନ୍ତି ।

ପର୍ଯ୍ୟାୟକ୍ରମେ ଓ ଧାରାବାହିକ ଭାବେ ଜାତୀୟକରଣ ବ୍ୟାଙ୍କର ଜମାରାଶିକୁ ଲୁଟ୍‌କରି ପରାଙ୍ଗପୁଷ୍ଟ ପାଲଟିଥିବା ଶିଳ୍ପପତି ଓ ତାଙ୍କୁ ସହଯୋଗ କରୁଥିବା ବ୍ୟୁରୋକ୍ରାଟ ଓ ରାଜନୈତିକ ନେତାମାନଙ୍କୁ ଲୋକଲୋଚନକୁ ଆଣିବାପାଇଁ ଏବେ ଦିଲ୍ଲୀର ଏକ ସ୍ୱେଚ୍ଛାସେବୀ ସଂଗଠନ ସୁପ୍ରିମକୋର୍ଟରେ ଏକ କେଶ୍ ଦାଏର୍ କରିଛନ୍ତି । ଏହି କମନ୍ କଜ୍ ମକଦ୍ଦମାରେ କେଉଁ କେଉଁ ଉଦ୍ୟୋଗରେ କେତେ କେତେ ଟଙ୍କା ଅନାଦେୟ ଋଣ ରହିଛି, ତା'ର ପୂର୍ଣ୍ଣାଙ୍ଗ ତାଲିକା ଦିଆଯାଉ ନଥିଲେ ମଧ୍ୟ ନୀତି ଦୃଷ୍ଟିରୁ ୪୩ ହଜାର କୋଟି ଟଙ୍କାର ଅନାଦେୟ ଋଣ କିପରି ଆଦାୟ କରାଯିବ, ତାହାର ନୀତି ସୁପ୍ରିମ୍‌କୋର୍ଟ ନିର୍ଦ୍ଧାରଣ କରିବ ।

ଅନାଦେୟ ଋଣ ଦେଇନପାରିଲେ କିଛି ଋଣ ଛାଡ଼କରି କିଛି ଋଣ ଦେବାପାଇଁ ବର୍ତ୍ତମାନ ଯେଉଁ ବ୍ୟବସ୍ଥା ଆରମ୍ଭ ହୋଇଛି, ତାହା ଅନୈତିକ ଓ ଅସାଧୁ ବ୍ୟବସ୍ଥା ଛଡ଼ା ଅନ୍ୟ କିଛି ନୁହେଁ ଏବଂ ଏହା ମଧ୍ୟ ସୁପ୍ରିମ୍‌କୋର୍ଟର ବିଚାର ପରସିରକୁ ଯେ ନଆସିବ ତାହା କୁହାଯାଇ ନପାରେ । ନରସିଂହମ୍ କମିଟି ୨ୟ ତାଙ୍କ ରିପୋର୍ଟରେ ଏ ସମ୍ପର୍କରେ ସମ୍ପୂର୍ଣ୍ଣ ନୀରବ । ହୁଏତ ପୁଣି ସରକାର ୩ୟ ନରସିଂହମ୍ କମିଟି ନିଯୁକ୍ତ କରିପାରନ୍ତି । ବିଭିନ୍ନ ସରକାରୀ ଉଦ୍ୟୋଗ ବ୍ୟାଙ୍କରେ ୧୯୯୬-୯୭ ମସିହାରେ ଯେଉଁ ଋଣକୁ ଛାଡ଼ କରାଗଲା (ରିଟିନ୍ ଅଫ୍), ତା'ର ଏକ ତାଲିକା ଦେଲେ ସର୍ବସାଧାରଣ ଅବଗତ ହୋଇପାରିବେ ।

| | | | |
|---|---|---|---|
| ୧. | ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କ | – | ୩୭୫.୭ କୋଟି |
| ୨. | ଷ୍ଟେଟ୍‌ବ୍ୟାଙ୍କ ଅଫ୍ ଇଣ୍ଡିଆ | – | ୨୯୩.୭କୋଟି |
| ୩. | ୟୁକୋ ବ୍ୟାଙ୍କ | – | ୨୨୦.୬କୋଟି |
| ୪. | ବ୍ୟାଙ୍କ ଅଫ୍ ଇଣ୍ଡିଆ | – | ୨୧୭.୨କୋଟି |
| ୫. | ସେଣ୍ଟ୍ରାଲ ବ୍ୟାଙ୍କ ଅଫ୍ ଇଣ୍ଡିଆ | – | ୧୫୬.୮କୋଟି |

| | | | |
|---|---|---|---|
| ୬. | ପଞ୍ଜାବ ନେସନାଲ ବ୍ୟାଙ୍କ | — | ୧୫୦.୩କୋଟି |
| ୭. | ଷ୍ଟେଟ୍‌ବ୍ୟାଙ୍କ ଅଫ୍ ହାଇଦ୍ରାବାଦ | — | ୧୩୬.୭କୋଟି |
| ୮. | ବ୍ୟାଙ୍କ ଅଫ୍ ବରୋଦା | — | ୭୦.୨କୋଟି |
| ୯. | ୟୁନାଇଟେଡ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ | — | ୬୪.୫କୋଟି |
| ୧୦. | ସିଣ୍ଡିକେଟ୍ ବ୍ୟାଙ୍କ | — | ୫୮.୮କୋଟି |
| ୧୧. | ଦେନା ବ୍ୟାଙ୍କ | — | ୫୮.୮କୋଟି |
| ୧୨. | ଅନ୍ୟ ବ୍ୟାଙ୍କମାନେ | — | ୩୫୭.୮କୋଟି |

***ସମୁଦାୟ ୨୧୬୨.୧କୋଟି***

ଯଦି ନରସିଂହମ୍ କମିଟି ୨ୟ ରିପୋର୍ଟ ଏ ସମ୍ପର୍କରେ କିଛି ପ୍ରସ୍ତାବ ଦେଇଥାନ୍ତା, ତେବେ ତାହା ନିଶ୍ଚିତ ଭାବେ ସ୍ୱାଗତଯୋଗ୍ୟ ହୋଇଥାନ୍ତା । ମାତ୍ର କେବଳ ବ୍ୟାଙ୍କ ଶିଳ୍ପକୁ ରୁଗ୍ଣତାରୁ ଉଦ୍ଧାର କରିବାପାଇଁ ବ୍ୟାଙ୍କ ବନ୍ଦ କରିବା, ପୂର୍ଣ୍ଣମାତ୍ରାରେ ଯାନ୍ତ୍ରିକକରଣ କରିବା ଇତ୍ୟାଦି ପ୍ରସ୍ତାବ ଦେବାର କୌଣସି ଯୁକ୍ତି ନାହିଁ ବରଂ ଏହା ବ୍ୟାଙ୍କମାନଙ୍କର ପ୍ରତିଯୋଗିତାମୂଳକ ମନୋଭାବକୁ କ୍ଷୁର୍ଣ୍ଣ କରିବ ଓ ଭାରତୀୟ ବ୍ୟାଙ୍କ ବ୍ୟବସ୍ଥାରେ ଆଞ୍ଚ ଆଣିବ । ନରସିଂହମ୍ କମିଟି ୨ୟ ରିପୋର୍ଟ ଦାଖଲ ହେବା ପରଠାରୁ ବ୍ୟାଙ୍କରେ ଥିବା ଅଫିସର ଓ କର୍ମଚାରୀ ୟୁନିୟନମାନେ ଏହାକୁ ବିରୋଧ କରି କାର୍ଯ୍ୟପନ୍ଥା ଗ୍ରହଣ କଲେଣି ଓ ସରକାର ଯଦି ବିଚାର ନକରି ବିଜ୍ଞତାର ସହିତ କାର୍ଯ୍ୟ ନକରନ୍ତି, ତେବେ ସବୁ ବ୍ୟାଙ୍କ କର୍ମଚାରୀମାନେ ଧର୍ମଘଟରେ ଯୋଗଦେବେ । ଏହାଦ୍ୱାରା ସର୍ବସାଧାରଣ ଅସୁବିଧା ଭୋଗିବେ ନିଶ୍ଚୟ, କିନ୍ତୁ ଏ ଅସୁବିଧା ସୃଷ୍ଟି କରିବା ମୂଳରେ ସରକାରଙ୍କର ନ୍ୟସ୍ତସ୍ୱାର୍ଥ ନିହିତ ରହିବ ନାହିଁକି ? ସେମାନେ ଶିଳ୍ପପତି, ବହୁଜାତିକ ପୁଞ୍ଜିପତି କମ୍ପାନି ଓ ଦୁର୍ନୀତିଗ୍ରସ୍ତ ବ୍ୟୁରୋକ୍ରାଟକୁ ଏହାଦ୍ୱାରା ସୁରକ୍ଷା ପ୍ରଦାନ କରାଯିବ ନାହିଁକି ? ଏ ସମ୍ପର୍କରେ ବ୍ୟାପକ ବିଚାର ଆଲୋଚନା ଆବଶ୍ୟକ କରେ ।



# ବ୍ୟାଙ୍କ ଋଣ ଖିଲାପକାରୀଙ୍କୁ ଦଣ୍ଡ ମିଳିବ ନାହିଁ କାହିଁକି ?

ଗତ ୨୯ ତାରିଖ ସନ୍ଧ୍ୟାରେ ଭୁବନେଶ୍ୱର ଜନପଥର ସେଣ୍ଟ୍ରାଲ ବ୍ୟାଙ୍କ ଅଫ୍ ଇଣ୍ଡିଆ ନିକଟରେ ଏକ ଅଦ୍ଭୁତ ଘଟଣା ଦେଖିବାକୁ ମିଳିଲା । ସେଠାରେ ବହୁ ଲୋକ ଜମିଥିଲେ । ସାଧାରଣ ଲୋକମାନେ ଧାଡ଼ିବାନ୍ଧି କୌଣସି ଏକ ଫର୍ମରେ ଦସ୍ତଖତ କରୁଥିଲେ । ସେଠାରେ ଦୁଇଜଣ ବିଶିଷ୍ଟ ବ୍ୟକ୍ତି ବସିଥିବାର ଦେଖାଗଲା । ପ୍ରଥମ ଜଣକ ଥିଲେ ବ୍ୟାଙ୍କ କର୍ମଚାରୀମାନଙ୍କର ସର୍ବଭାରତୀୟ ନେତା ତାରକେଶ୍ୱର ଚକ୍ରବର୍ତ୍ତୀ ଓ ବରିଷ୍ଠ ଲେଖକ ସାତକଡ଼ି ହୋତା । ସେମାନଙ୍କର ବସିଥିବା ସ୍ଥାନର ପୃଷ୍ଠଦେଶ ମଣ୍ଡନ କରିଥିଲା ନାଲି କନାର ଏକ ବ୍ୟାନର । ସେଥିରେ ଲେଖାଥିଲା (କ) ଋଣ ଖିଲାପକାରୀଙ୍କ ନାମ ପ୍ରକାଶ କରାଯାଉ, (ଖ) ଜାଣିଶୁଣି ଯେଉଁମାନେ ବ୍ୟାଙ୍କ ଋଣ ଫେରସ୍ତ କରୁନାହାନ୍ତି, ତାହାଙ୍କୁ ଅପରାଧୀ ବୋଲି ବିବେଚନା କରାଯାଉ, (ଗ) ଋଣ ଖିଲାପକାରୀଙ୍କୁ କଠୋର ଦଣ୍ଡ ଦିଆଯାଉ, (ଘ) ଯେଉଁ ଋଣ 'ଖରାପ ଋଣରେ' ପରିଗଣିତ ହେଉଛି, ତାକୁ ଆଦାୟ କରିବାପାଇଁ ବିଶେଷ ନ୍ୟାୟାଳୟ ଏବଂ ଆଇନ୍ ହେଉ, (ଙ) ଦୁର୍ବଳ ଓ ଗ୍ରାମାଞ୍ଚଳ କ୍ଷେତ୍ରକୁ ଋଣ ଯୋଗାଇ ଦିଆଯାଉ ।

ଏହି ବ୍ୟାନରଟିକୁ ପଢ଼ିବା ପରେ ସ୍ୱତଃ ମନରେ ପ୍ରଶ୍ନ ହେଲା ସତରେ ଏହି ଋଣ ଖିଲାପ କରୁଥିବା ଉଦ୍ୟୋଗଗୁଡ଼ିକ କିଏ ଏବଂ କାହିଁକି ସେମାନେ ଋଣ ଦେଉନାହାନ୍ତି । ଭାରତରେ ଥିବା ବ୍ୟାଙ୍କଗୁଡ଼ିକର ଅନାଦେୟ ଋଣ ପରିମାଣ ୫୮ ହଜାର କୋଟି ଟଙ୍କା । ଏତି ଋଣ ଆଦାୟ ହୋଇନପାରିବା ଫଳରେ ବ୍ୟାଙ୍କଗୁଡ଼ିକ ରୁଗ୍ଣ ହୋଇଯାଉଛନ୍ତି ଏବଂ ୟୁକୋ, ୟୁ.ବି.ଆଇ. ଏବଂ ଇଣ୍ଡିଆନ୍ ବ୍ୟାଙ୍କକୁ ଦୁର୍ବଳ ବ୍ୟାଙ୍କ ବୋଲି ମଧ ଘୋଷଣା କରାଯାଇଛି । ''ମାର୍ ମାର୍ ଭଣ୍ଡାରିଆକୁ ମାର୍'' ନ୍ୟାୟରେ ବ୍ୟାଙ୍କ ରୁଗ୍ଣ ହେବା ଓ ଦୁର୍ବଳ ହେବାର ଦୋଷ କର୍ମଚାରୀମାନଙ୍କ ମୁଣ୍ଡ ଉପରେ ଲଦି ଦିଆଯାଉଛି । କିନ୍ତୁ ବାସ୍ତବ ପକ୍ଷେ ବଡ଼ ବଡ଼ ବ୍ୟବସାୟୀ ଓ ଉଦ୍ୟୋଗଗୁଡ଼ିକ ଉପରେ ଜମା ହୋଇଥିବା ଏହି ୫୮ ହଜାର କୋଟି ଟଙ୍କା ଯଦି ଆଦାୟ ହୁଏ, ତେବେ ବ୍ୟାଙ୍କଗୁଡ଼ିକ ଦୁର୍ବଳ ବା ରୁଗ୍ଣ ହେବାର ଆଶଙ୍କା ରହିବ ନାହିଁ ।

| କ୍ରମିକ ସଂଖ୍ୟା | ବ୍ୟାଙ୍କର ନାମ | ଋଣଗ୍ରହୀତାଙ୍କ ନାମ | ଋଣର ପରିମାଣ (ଲକ୍ଷ) | ନିର୍ଦ୍ଦେଶକଙ୍କ ନାମ |
|---|---|---|---|---|
| ୧. | ଆଇ.ଡ଼ି.ବି.ଆଇ. | ଇଣ୍ଡିଆନ୍ ଚାର୍ଜକ୍ରୋମ ଲିଃ, ଚମିଖାଲ ଭୁବନେଶ୍ୱର | ୪୯.୩୨୮ | ବଂଶୀଧର ପଣ୍ଡା<br>ଆର.ଏନ.ମିଶ୍ର<br>ଇଲା ପଣ୍ଡା |
| ୨. | ବିଜୟା ବ୍ୟାଙ୍କ ଏମ୍.ଆର.ଏମ୍.ବି. ମାଡ୍ରାସ | ଇଣ୍ଡିଆନ୍ ଚାର୍ଜକ୍ରୋମ ଲିଃ, ଚମିଖାଲ ଭୁବନେଶ୍ୱର | ୫.୧୦୪ | ଡ଼ି. ବନ୍ଦୋପାଧ୍ୟାୟ<br>ଏସ.ପି.ମାଥୁର<br>ବୈଜୟନ୍ତୀ ପଣ୍ଡା |
| ୩. | ଇଣ୍ଡିଆନ୍ ବ୍ୟାଙ୍କ | ଇଣ୍ଡିଆନ ମେଟାଲସ୍ ଆଣ୍ଡ ଫେରୋଆଲଏଜ୍ (କଳିଙ୍ଗ ଟ୍ୟୁବ୍ ଡ଼ିଭିଜନ) | ୪.୫୮୫ | ଶାମ ମାନେକ୍ସା<br>ଶୁଭକାନ୍ତ ପଣ୍ଡା<br>ଜି.ଏଲ.ଟଣ୍ଡନ |
| ୪. | ଆର୍.ସି.ଆଇ.ସି.ଆଇ | ଇଣ୍ଡିଆନ ଚାର୍ଜକ୍ରୋମ ଲିଃ ଚମିଖାଲ, ଭୁବନେଶ୍ୱର | ୨.୬୯୩ | ଜି.ଏଲ. ଟଣ୍ଡନ |
| ୫. | ଆଇ.ଏଫ.ସି.ଆଇ. | ଇଣ୍ଡିଆନ୍ ଚାର୍ଜକ୍ରୋମ ଲିଃ ଚମିଖାଲ, ଭୁବନେଶ୍ୱର | ୨.୬୯୩ | ଜି.ଏଲ.ଟଣ୍ଡନ |
| ୬. | ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କ, ବାଲେଶ୍ୱର | ମାଜେଷ୍ଟିକ୍ ଆକ୍ୱା ପ୍ରାଇଭେଟ ଲିମିଟେଡ଼ ୮୮/୮, ବାପୁଜୀନଗର ଭୁବନେଶ୍ୱର | ୫୪ | ତ୍ରୈଲୋକ୍ୟନାଥ ମହାପାତ୍ର<br>ଭୁବନେଶ୍ୱରୀ ମହାନ୍ତି<br>ଶାନ୍ତିଲତା ମହାପାତ୍ର |
| ୭. | ୟୁନାଇଟେଡ଼ ବ୍ୟାଙ୍କ ଅଫ୍ ଇଣ୍ଡିଆ ବାଲେଶ୍ୱର | କୋଣାର୍କ ପେପର ଆଣ୍ଡ ଇଣ୍ଡଷ୍ଟ୍ରିଜ୍ ଲିଃ ଝରିଆ, ମୟୁରଭଞ୍ଜ | ୩୫୨ | ଭି.ଏସ.କୋଠାରୀ<br>କେ.ସି. କୋଠାରୀ<br>ଓ ଅନ୍ୟମାନେ |

*(ସୌଜନ୍ୟ : ନ୍ୟୁ ଏଜ ଉଇକ୍ଲି)*

୧୮୬୯ ମସିହାରେ ବ୍ୟାଙ୍କଗୁଡ଼ିକୁ ଜାତୀୟକରଣ କରାଗଲା । ଘରୋଇ ମାଲିକାନାରୁ ସରକାରୀ ମାଲିକାନାକୁ ବ୍ୟାଙ୍କଗୁଡ଼ିକ ଆସିବା ଫଳରେ ଏଥିରେ ଜମା ପରିମାଣ ବଢ଼ିଲା, ବେଶି ବେଶି ଶାଖା ଖୋଲାଗଲା, ନିଯୁକ୍ତିର ଦ୍ୱାର

ଉନ୍ମୁକ୍ତ ହେଲା । ଗ୍ରାମାଞ୍ଚଳର ଗରିବ, ଖଟିଖିଆ, ମେହନତି ମଣିଷ, କ୍ଷୁଦ୍ର ଓ ନାମମାତ୍ର ଚାଷୀ, କାରିଗର ଏହାର ସୁଫଳ ପାଇଲେ । ସେମାନଙ୍କୁ ସହଜରେ ଓ ସୁବିଧାରେ ଋଣ ମିଳିଲା । ବ୍ୟାଙ୍କର ସଂଗ୍ରହ ହୋଇଥିବା ଏହି ପ୍ରଭୂତ ଜମା ଟଙ୍କାରୁ ଋଣନେଇ ବହୁ ବଡ଼ ବଡ଼ ଉଦ୍ୟୋଗମାର୍ନ ପ୍ରତିଷ୍ଠା ହେଲା ଏବଂ ଉଦ୍ୟୋଗପତିମାନେ ଏହାର ସୁଯୋଗ ନେଇ ନିଜର ବ୍ୟକ୍ତିଗତ ସମ୍ପତ୍ତି ବୃଦ୍ଧି କରିବାବେଳେ, ଉଦ୍ୟୋଗକୁ କ୍ଷତି କରିବା ସହିତ ବ୍ୟାଙ୍କ ଋଣକୁ ମଧ ଖିଲାପ କରିବାକୁ ଆରମ୍ଭ କଲେ । ଯେଉଁ ବଡ଼ ବଡ଼ ଉଦ୍ୟୋଗପତିମାନେ ଋଣନେଇ ଋଣ ଖିଲାପ କଲେ, ସେହିମାନେ ବର୍ତ୍ତମାନ ମିଳିତ ଭାବେ କମିଟି ବସାଇ ଘୋଷଣା କଲେ ଯେ ଦୁର୍ବଳ ବ୍ୟାଙ୍କଗୁଡ଼ିକୁ ବନ୍ଦ କରିଦିଆଯାଉ ଓ କର୍ମଚାରୀମାନଙ୍କୁ ଛଟେଇ କରାଯାଉ । ବ୍ୟାଙ୍କରୁ ଋଣ ନେବା, ଋଣ ପରିଶୋଧ ନକରିବା ଦ୍ୱାରା ବ୍ୟାଙ୍କକୁ ଦୁର୍ବଳ ଓ ରୁଗ୍ଣ କରିବା ପରିଶେଷରେ ବ୍ୟାଙ୍କକୁ ସମ୍ପୂର୍ଣ୍ଣ ବନ୍ଦ କରିଦେଇ ସବୁଦିନ ପାଇଁ ବ୍ୟାଙ୍କ ଋଣରୁ ମୁକ୍ତ ହୋଇଯିବାର ଉଦ୍ୟୋଗପତିମାନଙ୍କର ଏହି ଚକ୍ରାନ୍ତ ବିରୋଧରେ ଯେ ଅଗଣିତ ବ୍ୟାଙ୍କ୍ କର୍ମଚାରୀ ସ୍ୱର ଉତ୍ତୋଳନ କରିଛନ୍ତି, ରାଷ୍ଟ୍ରପତିଙ୍କୁ ଦାବିପତ୍ର ଦେବାପାଇଁ ଦସ୍ତଖତ ସଂଗ୍ରହ ଅଭିଯାନ ଆରମ୍ଭ କରିଛନ୍ତି, ଏହା ଅତ୍ୟନ୍ତ ଆନନ୍ଦର କଥା । ଏପରି ଏକ ସାଧୁ ଉଦ୍ୟମରେ ସମାଜର ସବୁ ଶ୍ରେଣୀର ଲୋକମାନେ ଏକାଠି ହେବାର ଅବକାଶ ମିଳିଛି । ଅଯାଚିତ ଭାବରେ ସମସ୍ତେ ଏହି ଦସ୍ତଖତ ସଂଗ୍ରହ ଅଭିଯାନରେ ସାମିଲ ହେବାର ଯେଉଁ ସୁଯୋଗ ଆସିଛି ତାହାକୁ ଉପଯୋଗ କରିବା ଦରକାର । ବ୍ୟାଙ୍କ ଖାତାରେ ଗଡୁଥିବା ଏହି ୫୮ ହଜାର କୋଟି ଟଙ୍କାର ଅନାଦେୟ ଋଣ ଯେଉଁମାନଙ୍କ ଉପରେ ରହିଛି, ସେମାନେ ସମସ୍ତେ ବିଶିଷ୍ଟ ଶିଳ୍ପପତି । ଘରୋଇ ଶିଳ୍ପପତିମାନେ ଏହି ବ୍ୟାଙ୍କ ଋଣରେ ନିଜର ସୌଖିନ ମେଣ୍ଟାଇ ସାରି ହଜାର ହଜାର କୋଟି ଟଙ୍କାକୁ ଫାଙ୍କିଦେବାର ହୀନ ଚକ୍ରାନ୍ତ ବିରୋଧରେ ଉଠିଥିବା ସ୍ୱର ଏକ ଜାତୀୟତା ଓ ଦେଶପ୍ରେମର ସ୍ୱର ।

ଗତ ୧୨ ବର୍ଷ ମଧ୍ୟରେ ପ୍ରାୟ ୧୭ଗୋଟି ଘରୋଇ ଉଦ୍ୟୋଗରେ ଥିବା ବ୍ୟାଙ୍କ୍‌ମାନେ ବୁଡ଼ିଗଲେଣି ଏବଂ ବନ୍ଦ ହୋଇଗଲେଣି । ଏପରି ମଧ ହୋଇଛି ଯେ ଅନେକଗୁଡ଼ିଏ ଘରୋଇ ଉଦ୍ୟୋଗରେ ଥିବା ବ୍ୟାଙ୍କ ବୁଡ଼ିଯିବା ଫଳରେ, ସେଗୁଡ଼ିକ ଥଇଥାନ କରିବାକୁ ଜାତୀୟକରଣ ବ୍ୟାଙ୍କ ସହିତ ମିଶ୍ରଣ ମଧ କରାଯାଇଛି । ଘରୋଇକରଣକୁ ଯଦି ପ୍ରଗତି ପାଇଁ ବିବେଚନା କରାଯାଉଛି, ତେବେ

ଏହି ବ୍ୟାଙ୍କଗୁଡ଼ିକ କ୍ଷତିରେ ଚାଲି ବନ୍ଦ ହୋଇଯିବାବେଳେ ଜାତୀୟକରଣ ବ୍ୟାଙ୍କ ସହିତ ଏଗୁଡ଼ିକୁ ମିଶ୍ରଣ କରାଗଲା କାହିଁକି ? ପ୍ରାଇଭେଟ୍ କର୍ପୋରେଟ୍ ସେକ୍ଟର ଯେପରି ଆଇନଗତ ଉପାୟରେ ବ୍ୟାଙ୍କ ଟଙ୍କାକୁ ଲୁଟି ନେଉଛନ୍ତି, ସେଥିପାଇଁ ଆଇନଗତ କାର୍ଯ୍ୟାନୁଷ୍ଠାନ ହେବାର ଆବଶ୍ୟକତା ରହିଛି । ସରକାର ଧର୍ମକୁ ଆଖିଠାର ମାରି ଋଣ ଆଦାୟ ଟ୍ରିବ୍ୟୁନାଲ ବସାଇଥିଲେହେଁ, ତାହା ମାଧ୍ୟମରେ ଋଣ ଆଦାୟ ହୋଇପାରୁନି ।

ବ୍ୟାଙ୍କ ଆଇନରେ କିଏ କେତେ ଋଣ ନେଇଛି, ତାହା ପ୍ରକାଶ କରିବାର ନିୟମ ନଥିବାରୁ ଏହାର ସୁଯୋଗ ନେଇ ଏହି ଅସାଧୁ କର୍ପୋରେଟ୍ ସେକ୍ଟରମାନେ ଋଣ ପଇଠ କରୁନାହାନ୍ତି । ଏପରିକି ଗୋଟିଏ ଗୋଟିଏ କମ୍ପାନିର ନିର୍ଦ୍ଦେଶକ ଓ ମାଲିକମାନଙ୍କର ନାମ ବହୁ ବହୁ କମ୍ପାନି ବୋର୍ଡ଼ରେ ଦେଖିବାକୁ ମିଳିଛି ଏବଂ ସେମାନେ ସବୁଗୁଡ଼ିକୁ ପରିଶୋଧ କରୁନାହାନ୍ତି । ବ୍ୟାଙ୍କମାନଙ୍କରୁ ଛୋଟ ଛୋଟ ବ୍ୟବସାୟୀ ବା କୃଷି ପରି ଅଗ୍ରାଧିକାରୀ କ୍ଷେତ୍ର ପାଇଁ ଯେଉଁ ଋଣ ଦିଆଯାଇଛି, ତାହାର ପରିଶୋଧର ହାର ଅଧିକ ଏବଂ ଅନାଦେୟ ଋଣର ପରିମାଣ ମଧ୍ୟ ସ୍ୱଳ୍ପ । ବ୍ୟାଙ୍କ ଶିଳ୍ପରୁ କେଉଁମାନେ କେତେ ପରିମାଣରରେ ଋଣ ନେଇଛନ୍ତି, ତା'ର ଏକ ଚିଠା ଗତ ଜାନୁୟାରୀ ୧୦ ତାରିଖରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସମ୍ପାଦକ ଏ.ବି.ବର୍ଦ୍ଧନ ପ୍ରକାଶ କରିଛନ୍ତି । ତା' ପୂର୍ବରୁ ବ୍ୟାଙ୍କ କର୍ମଚାରୀ ସଂଘର ନେତା ତାରକେଶ୍ୱର ଚକ୍ରବର୍ତ୍ତୀ ସି.ଆଇ.ଆଇ. ଦ୍ୱାରା ଗଠିତ ଟ୍ୟାକ୍ସ ଫୋର୍ସରେ ଥିବା ସଭ୍ୟମାନେ କେତେ ବ୍ୟାଙ୍କ ଋଣ ଖିଲାପ କରିଛନ୍ତି, ତାହା ମଧ୍ୟ ଏକ ପ୍ରେସ୍ ବିଜ୍ଞପ୍ତିରେ ପ୍ରକାଶ କରିଛନ୍ତି, ଯାହା ଫଳରେ ସମଗ୍ର ଦେଶରେ ଏବେ ହଇଚଇ ସୃଷ୍ଟି ହୋଇଛି ।

ରାଜନୈତିକ ନେତା, ବ୍ୟୁରୋକ୍ରାଟ ଏବଂ ଏହି କର୍ପୋରେଟ୍ ସେକ୍ଟରର ଅସାଧୁ ମେଣ୍ଟର ସାମାନ୍ୟ ପରଦା ଉତ୍ତୋଳନ ହେବାର ଆବଶ୍ୟକତା ରହିଛି । ସର୍ବଭାରତୀୟ ସ୍ତରରେ ଯେଉଁମାନେ କୋଟି କୋଟି ଟଙ୍କା ଋଣନେଇ ଫେରସ୍ତ ଦେଉନାହାନ୍ତି, ତାହାର ତାଲିକା ସହିତ ଓଡ଼ିଶାରେ କିପରି ଭାବରେ ଏପରି ଅସାଧୁ ବ୍ୟବସାୟୀ ଓ ଉଦ୍ୟୋଗପତିଙ୍କର ସଂଖ୍ୟା ବଢ଼ିଚାଲିଛି, ତାହାର ତାଲିକା ପ୍ରକାଶ କରାଯାଇ ଜନମତ ଜାଗ୍ରତ କରିବା, ଦସ୍ତଖତ ସଂଗ୍ରହ କରିବା, ବିଶେଷକରି ଯେଉଁମାନେ ଲୋକ ପ୍ରତିନିଧି (ଯଥା : ଏମ.ପି. ବା ଏମ୍.ଏଲ୍.ଏ.) ସେମାନଙ୍କର ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ମତ ନେବା କାର୍ଯ୍ୟ ଯେପରି ଭାବରେ ବ୍ୟାଙ୍କ

କର୍ମଚାରୀମାନେ ଗ୍ରହଣ କରିଛନ୍ତି, ତାହା ପ୍ରଶଂସନୀୟ। ଆମେ ଏହି ଲେଖା ତଳେ ସର୍ବଭାରତୀୟ ସ୍ତରରେ ଏହି ଋଣ ଖିଲାପକାରୀଙ୍କ ମଧ୍ୟରେ ସର୍ବାଗ୍ରେ ରହିଛି ସେୟାର ବଜାର ଦଲାଲ୍ ହର୍ଷଦ ମେହେଟ୍ଟାଙ୍କ ନାମ। ଓଡ଼ିଶାର କେତେଜଣ ଋଣ ଖିଲାପକାରୀଙ୍କ ତାଲିକା ଦେଉଛୁ। ଦେଶର ଋଣ ଖିଲାପକାରୀଙ୍କ ତାଲିକା ପ୍ରକାଶ କଲେ ତାହା ଏକ ଗ୍ରନ୍ଥ ହେବ।

ବ୍ୟାଙ୍କ ଋଣ ଖିଲାପକାରୀଙ୍କର ତାଲିକା ଏ.ଆଇ.ବି.ଇ.ଏ. ପ୍ରକାଶ କରିବା ସହିତ ପ୍ରଧାନମନ୍ତ୍ରୀ ଓ ଅର୍ଥମନ୍ତ୍ରୀଙ୍କଠାରେ ଦାବି କରିଛି ଯେ ଏମାନଙ୍କ ବିରୋଧରେ କଠୋର ଆଇନଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉ ଏବଂ ଋଣ ଆଦାୟ କରିବାର ବ୍ୟବସ୍ଥା ହେଉ। ଯଦି ପାକିସ୍ତାନର ସାମରିକ ସରକାର ବ୍ୟାଙ୍କ ଋଣ ଖିଲାପ କରୁଥିବା ବ୍ୟକ୍ତି ବିଶେଷଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ କରିପାରିଲା, ତେବେ ଆମ ସରକାର ନ କରିପାରିବ କାହିଁକି ବୋଲି ସେମାନେ ଯୁକ୍ତି କରିଛନ୍ତି।



# ବ୍ୟାଙ୍କ ଘରୋଇକରଣ ଆବଶ୍ୟକ କି ?

ଯେଉଁମାନେ ବ୍ୟାଙ୍କ ଘରୋଇକରଣ କରିବାର ସ୍ୱର ଉଠାଇଛନ୍ତି, ସେମାନେ ବ୍ୟାଙ୍କମାନଙ୍କରେ ଦିନକୁ ଦିନ ବଢ଼ି ଚାଲିଥିବା ଅନାଦେୟ ଋଣ ସମ୍ପର୍କରେ କିଛି କହୁନାହାନ୍ତି । ଗତ ୧୫ ବର୍ଷ ମଧ୍ୟରେ କିପରି ଭାବରେ ଘରୋଇ ଉଦ୍ୟୋଗର ଥିବା ବ୍ୟାଙ୍କମାନେ ଜାତୀୟକରଣ ବ୍ୟାଙ୍କଗୁଡ଼ିକ ସହିତ ମିଶ୍ରଣ ହୋଇଛି ତାହା ଆଗରୁ କୁହାଯାଇଛି । ଜମାକାରୀଙ୍କ ଜମାର ସୁରକ୍ଷା, କର୍ମଚାରୀମାନଙ୍କର ଚାକିରୀର ନିରାପତ୍ତା ଓ ବିଶେଷ କରି ବ୍ୟାଙ୍କ ବ୍ୟବସ୍ଥାର ପ୍ରତ୍ୟୟ ଯୋଗ୍ୟତାକୁ ବଜାୟ ରଖିବା ପାଇଁ ଘରୋଇ ବ୍ୟାଙ୍କଗୁଡ଼ିକୁ ସ୍ୱମ୍ପୂର୍ଣ୍ଣ ସମାପନ ନକରି ଜାତୀୟକରଣ ବ୍ୟାଙ୍କ ସହିତ ମିଶ୍ରଣ କରାଯାଇଛି । ଏଥିରୁ ଘରୋଇ କ୍ଷେତ୍ରରେ ଥିବା ବ୍ୟାଙ୍କଗୁଡ଼ିକର ସ୍ଥିତି ଓ ସ୍ଥାୟିତ୍ୱ ବୁଝାଯାଉଛି ।

୧୯୬୯ ମସିହାରେ ବ୍ୟାଙ୍କ ଜାତୀୟକରଣ ହେବାବେଳେ ଏହାର ଶାଖା ସଂଖ୍ୟା ଥିଲା ୮୨୬୨ । ୧୯୯୯ରେ ବ୍ୟାଙ୍କ ଶାଖା ସମଗ୍ର ଭାରତବର୍ଷରେ ୪୫,୬୯୮ରେ ପହଞ୍ଚିଛି । ସେତେବେଳେ ୨ଲକ୍ଷ ୨୦ ହଜାର କର୍ମଚାରୀ ଥିବାବେଳେ ବର୍ତ୍ତମାନ କର୍ମଚାରୀ ସଂଖ୍ୟା ୯ଲକ୍ଷ ୬୫ ହଜାର ୭୨୦ । ସମୁଦାୟ ଜମାର ପରିମାଣ ୪୬୬୫ କୋଟି ଥିବାବେଳେ ବର୍ତ୍ତମାନ ୭ ଲକ୍ଷ ୩୧ ହଜାର କୋଟି । ବ୍ୟାଙ୍କ ଋଣର ପରିମାଣ ୩୬୦୭ କୋଟି ଥିବା ସ୍ଥଳେ ବର୍ତ୍ତମାନ ତାହା ୩ଲକ୍ଷ ୬୯ ହଜାର କୋଟିରେ ପହଞ୍ଚିଛି । ୧୯୬୯ ମସିହାରେ କୃଷିକ୍ଷେତ୍ର ପାଇଁ ଋଣ ଥିଲା ୧୬୨କୋଟି ଓ ଅଗ୍ରାଧିକାର କ୍ଷେତ୍ରର ଋଣ ୪୪୧ କୋଟି । ୧୯୯୯ରେ ଏହା ୨୧ ହଜାର ୨୦୪ କୋଟିରୁ ୫୩ ହଜାର ୧୯୭ କୋଟିରେ ପହଞ୍ଚିଛି ।

ଘରୋଇକରଣ କରାଗଲେ କୃଷି, ଅଗ୍ରାଧିକାର କ୍ଷେତ୍ର, ଗ୍ରାମାଞ୍ଚଳ ଓ ଦରିଦ୍ର ଲୋକମାନଙ୍କୁ ଋଣ ମିଳି ପାରିବ ନାହିଁ । ଯେଉଁ ଅନାଦେୟ ଋଣ ୫୮ ହଜାର କୋଟି ଟଙ୍କା ରହିଛି, ତନ୍ମଧ୍ୟରୁ କେବଳ ଘରୋଇ କମ୍ପାନିମାନଙ୍କ ଉପରେ ୩୦ ହଜାର କୋଟିରୁ ଅଧିକ ଋଣ ରହିଛି ଯାହା ଆଦାୟ ହେବାର ସମ୍ଭାବନା ନାହିଁ । କେନ୍ଦ୍ର ଅର୍ଥମନ୍ତ୍ରୀ ତାଙ୍କ ବଜେଟ ଅଭିଭାଷଣରେ ଋଣ ଆଦାୟ ଟ୍ରିବ୍ୟୁନାଲ ଗଠନ

କରିବାର ପ୍ରସ୍ତାବ ରହିଥିବାର ଉଲ୍ଲେଖ କରିଛନ୍ତି । ବିଗତ ଛଅବର୍ଷ ମଧ୍ୟରେ ଦଶଗୋଟି ଋଣ ଆଦାୟ ଟ୍ରିବ୍ୟୁନାଲ ଏଯାବତ୍ ୩୦ ହଜାର କୋଟି ଟଙ୍କାର ମାତ୍ର ୨୫୦ କୋଟି ଟଙ୍କା ଋଣ ଆଦାୟର ସମାଧାନ କରିଛନ୍ତି ।

ଭାରତର ବହୁ ବଡ଼ ବଡ଼ ଘରୋଇ କମ୍ପାନି ଏହି ବ୍ୟାଙ୍କ ଋଣ ପରିଶୋଧ କରିବାର ଖିଲାପ କରିଛନ୍ତି । ସେଗୁଡ଼ିକ ମଧ୍ୟରୁ ଯେଉଁମାନଙ୍କ ଉପରେ ୫୦କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଋଣ ବାକି ରହିଛି ସେମାନେ ହେଲେ ହର୍ଷଦ ମେହେଟ୍ଟା, ଇଣ୍ଡିଆନ ଚାର୍କକ୍ରୋମ ଲିଃ, ପରାଶ୍ରମ ପୁରିଆ କମ୍ପାନି, ହିନ୍ଦୁସ୍ଥାନ ଫଟୋଫିଲ୍ମ ଲିଃ, ଇଷ୍ଟ ଓ୍ୱେଷ୍ଟ ଟ୍ରାଭେଲ ଆଣ୍ଡ ଟ୍ରେଡ଼ ଲିଙ୍କସ୍ ଲିଃ, ଆଲପାଇନ ଇଣ୍ଡଷ୍ଟ୍ରିଜ୍ ଲିଃ, ଆଲଟସ (ଇଣ୍ଡିଆ) ଲିଃ, ପ୍ରାଗ ବୋସିମି ସିନ୍ଥେଟିକ ଲିଃ, ମାଙ୍ଗାଲୋର କେମିକାଲ୍ସ ଆଣ୍ଡ ଫର୍ଟିଲାଇଜରସ୍ ଲିଃ, ମାକ୍ସୱେଲ ଇକଜିମ ଫୁଡ଼ସ୍, ପେଟ୍ରୋଫିଲ୍ସ କୋ.ଅପ. ଲିଃ, ନୋଭା ଇଲେକ୍ଟ୍ରୋମ୍ୟାଗ୍ନେଟିକ ଲିଃ, ବିନିଟେକ୍ସଟାଇଲ୍ସ ଲିଃ, ମଡ଼ର୍ଣ୍ଣ ଥ୍ରେଡ଼ସ ଲିଃ, ମଦାଲସା ଇଣ୍ଟରନ୍ୟାସନାଲ ଲିଃ, ମୋଦି ସିଟ୍ ଆଣ୍ଡ ୱିଭିଂ ମିଲ୍ସ ଲିଃ, ଗରୱେର ନାଇଲସ ଲିଃ, ପ୍ରିମିୟର ଭିନେଲ ଫ୍ଲୋରିଂ ଲିଃ, ଇଡ଼କଲ ସିମେଣ୍ଟ ଲିଃ, ପିଜେପାଇପ୍ସ ଆଣ୍ଡ ଭେସଲସ ଲିଃ, ମେଟାଲ ବକ୍ସ ଇଣ୍ଡିଆ ଲିଃ, ପାରତାର ଷ୍ଟିଲ୍ସ ଲିଃ, ରାଜନ୍ଦର ଷ୍ଟିଲ ଲିଃ, ଗଣପତି ଏକ୍ସପୋର୍ଟସ ଲିଃ, ଡ଼ିଏସକ୍ୟୁ ବାଓଟେକ ଲିଃ, ସିଆରବି କର୍ପୋରେସନ ଲିଃ, ମଫତଲାଲ ଇଞ୍ଜିନିୟରିଂ ଇଣ୍ଡିଆ ଲିଃ, ଗ୍ରାଫକୋ ଇଣ୍ଡଷ୍ଟ୍ରିଜ ଲିଃ, ଇଣ୍ଡିଆ ଷ୍ଟିମ ସିପ କମ୍ପାନି ଲିଃ, ଟେମେକ୍ସ କେମିକାଲସ ଲିଃ, ବି.ଏସ.ଟି.ଏମ.ଏ. ଗଞ୍ଜି ଲିଃ, ଆଟାସ ଇଣ୍ଡଷ୍ଟ୍ରିଜ୍ ଲିଃ, ନୋଭା ଉଦ୍ୟୋଗ ଲିଃ, ଏମ.ଭି.ଆର. ଇଣ୍ଡଷ୍ଟ୍ରିଜ୍ ଲିଃ, କିରଣ ଓଭରସିଜ୍ ଏକ୍ସପୋର୍ଟସ ଲିଃ, ଜେକେ ସିନ୍ଥେଟିକ୍ସ ଲିଃ, ହାଇଦ୍ରାବାଦ ଆଲୟଜ ଲିଃ, ଇଣ୍ଡିଆନ ଆଇରନ ଆଣ୍ଡ ଷ୍ଟିଲ କମ୍ପାନି ଲିଃ, ଏସ.ଏମ.ଡାଇକେମ ଲିଃ, ଜି.ଏସ.ଏସ. ଏଲ. ଇଣ୍ଡିଆ ଲିଃ, ସାକେଥ ଇଣ୍ଡିଆ ଲିଃ, ଏସଟ୍ରେଲା ବ୍ୟାଟେରିଜ୍ ଲିଃ, ଓରସ ଇଲେକ୍ଟ୍ରୋନିକ୍ସ ଲିଃ, ଆଲୁମିନିୟମ ଇଣ୍ଡଷ୍ଟ୍ରିଜ୍ ଲିଃ, ଆନ୍ଧ୍ର ସିମେଣ୍ଟ କମ୍ପାନି ଲିଃ, ଆନ୍ଧ୍ର ସିମେଣ୍ଟ କମ୍ପାନି ଲିଃ, ରମ୍ ଇଣ୍ଡଷ୍ଟ୍ରିଜ୍ ଲିଃ, ପ୍ରିମିୟର କେବୁଲ କମ୍ପାନି, ଏଚ.ଏମ.ଟି. ଲିଃ, ଡ଼ାଏନୋଭିଜନ ଲିମିଟେଡ଼, ବେଙ୍ଗଲ ପଟରିଜ ଲିଃ, ଜିଟିସି ଇଣ୍ଡଷ୍ଟ୍ରିଜ୍ ଲିଃ, ରିଏଲ ଭେଲ୍ୟୁ ଆପ୍ଲିୟାନସେସ, କଣ୍ଟିନେଣ୍ଟାଲ ଫ୍ଲୋଟଗ୍ଲାସ ଲିଃ, କର୍ଣ୍ଣାଟକ ବଲ୍ ବିୟରିଂ କର୍ପୋରେସନ ଲିଃ, ମାରୁତି ମାର୍କେଟିଂ ଲିଃ, ନବଜୀବନ ମିଲ୍ସ ଲିଃ, ନୋଭା ଆଇରନ ଆଣ୍ଡ ଷ୍ଟିଲ୍ ଲିଃ, ହାମକୋ ମାଇନିଂ ଏଣ୍ଡ ସ୍ମେଲ୍ଟର ଲିଃ,

ବାଓକେନେସିସ ଇଣ୍ଡିଆ ଲିଃ, ଏସସିଆଇଏଲ ଇଣ୍ଡିଆ ଲିଃ, ଋବିଶଙ୍କର ଇଣ୍ଡଷ୍ଟ୍ରିଆଲ ପ୍ରା.ଲିଃ, ଏଟିଭି ପେଆକେଜ୍ଜ ଇଣ୍ଡିଆ ଲିଃ, ବିପିଏଲ ଡ଼ିସପ୍ଲେ ଡ଼ିଭାଇସେସ ଲିଃ, ଭାନୁ ଆଇରନ ଆଣ୍ଡ ଷ୍ଟିଲ୍ କମ୍ପାନି ଲିଃ, ସମ୍ରାଟ ବାଇସାଇକେଲ, ଆମ୍ରା ଟ୍ୟୁବ ପ୍ରଡ଼କ୍ଟସ ଆଣ୍ଡ ଆମ୍ରା ଷ୍ଟିଲସ ଲିଃ, ଇନଷ୍ଟ୍ରୁମେଣ୍ଟେସନ ଲିଃ, ରୟଲ ସୀମା ପେପର ମିଲ୍ସ ଲିଃ, ଏନ.କେ. ଇଣ୍ଡଷ୍ଟ୍ରିଜ୍, ଆଗ୍ରୋ ଟେକ୍ ଇଣ୍ଡିଆ ଲିଃ, ବିହାର ସ୍ପଞ୍ଜ ଆଇରନ ଲିଃ, ଫରମୋଷ୍ଟ ଇଣ୍ଡଷ୍ଟ୍ରିଜ୍ ଇଣ୍ଡିଆ ଲିଃ, ଇଣ୍ଡିଆ ପଲିଫାଇବରସ ଲିଃ, ପ୍ଲିଷ୍ଟେକ ମ୍ୟାଗନେଟିକ ଲିଃ, ବ୍ରାଡ଼ବ୍ର୍ୟୁରି ମିଲ୍ସ ଲିଃ, ମୋଦି ଇଣ୍ଡଷ୍ଟ୍ରିଜ୍ ଲିଃ, ୱେଷ୍ଟର୍ଣ୍ଣ ଇଣ୍ଡିଆ ସ୍କିଙ୍ଗ ଆଣ୍ଡ ମାନୁଫାକ୍‌ଚରିଂ ଲିଃ, ପେନାର ଆଲୁମିନିୟମ କମ୍ପାନି ଲିଃ, ଶ୍ରୀ ଅମ୍ବିକା ମିଲ୍ସ ଲିଃ, ପୁନସିଦ୍, ପଞ୍ଜାବ ନ୍ୟାସନାଲ ଫର୍ଟିଲାଇଜର୍ସ ଆଣ୍ଡ କେମିକାଲ୍ସ ଲିଃ, ବିଟିଡ଼ବ୍ଲ୍ୟୁ ଭିନର ଲିଃ, ମାରଡ଼ିଆ କେମିକାଲ୍ସ ଲିଃ, ହାନିଲ ଏରା ଟେକ୍ସଟାଇଲସ ଲିଃ, ଇନଡ଼ିକ୍ୟାପି ଇଞ୍ଜିନିୟରିଂ ଲିଃ, କଲ୍ୟାଣପୁର ସିମେଣ୍ଟସ ଲିଃ, ହାଇଟାଇସ୍ତମ୍ ମ୍ୟାଗ୍ନେଟିକ୍ସ ଲିଃ, ଲକ୍ଷ୍ମୀ ବିଷ୍ଣୁ ଟେକ୍ସଟାଇଲ ମିଲ୍ସ ଲିଃ । ପଚାଶ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ଅନାଦେୟ ଋଣ ଥିବା ଏହି କମ୍ପାନିମାନଙ୍କ ବ୍ୟତୀତ ପ୍ରାୟ ୨ ଶହରୁ ଅଧିକ କମ୍ପାନି ଅଛନ୍ତି ଯେଉଁମାନଙ୍କ ଉପରେ ଏକକୋଟିରୁ ଊର୍ଦ୍ଧ୍ୱ ଋଣ ବାକି ରହିଛି ଓ ସେମାନେ ଜାଣିଶୁଣି ଏହାକୁ ପରିଶୋଧ କରୁନାହାନ୍ତି । କେବଳ ସେତିକି ନୁହେଁ ଗୋଟିଏ ପରିବାରର ସଦସ୍ୟମାନେ ବିଭିନ୍ନ ବ୍ୟାଙ୍କରୁ ଭିନ୍ନ ଭିନ୍ନ ନାମରେ ମଧ ସେହି କମ୍ପାନି ପାଇଁ ଋଣ ନେଇ ବକେୟା ରଖିଛନ୍ତି ଏବଂ ସେମାନେ ଦାବି ଉଠାଇଛନ୍ତି ବ୍ୟାଙ୍କଗୁଡ଼ିକୁ ଘରୋଇକରଣ କରାଯାଉ । ଫଳରେ ଋଣ ପରିଶୋଧ କରିବାର ଝାମେଲା ସେମାନଙ୍କ ପାଇଁ ନଥିବ ଓ ସେମାନେ ଘରୋଇ ବ୍ୟାଙ୍କର ମାଲିକ ମଧ ହୋଇଯିବେ ।

କିଛିବର୍ଷ ପୂର୍ବେ ଏହି ଋଣକୁ ଆଦାୟ କରିବା ପାଇଁ ଏକ ନୂଆ ପଦ୍ଧତି ଅନୁସୃତ କରାଯାଇଛି । ଓକିଲମାନେ ବ୍ୟାଙ୍କମାନଙ୍କୁ ସଲାସୁତୁରା ଦେଲେ ଯେ ଯଦି ଋଣକୁ ଆଦାୟ କରିବା ପାଇଁ କେସ କରିବାକୁ ହୁଏ ତେବେ କେସ୍ ପଡ଼ିବା ପାଇଁ ସର୍ବନିମ୍ନ ୫ ବର୍ଷରୁ ୧୫ ବର୍ଷ ଲାଗିପାରେ ଏବଂ ପରିଶେଷରେ ହୁଏତ ବ୍ୟାଙ୍କକୁ ଡ଼ିଗ୍ରୀ ମିଳିପାରେ । ବ୍ୟାଙ୍କ ଏହି ଡ଼ିଗ୍ରୀ ଦ୍ୱାରା ବନ୍ଧକ ଥିବା ସମ୍ପତ୍ତିକୁ ନିଲାମ କରି ଋଣ ଖାତାରେ ଜମା କରିପାରେ । କିନ୍ତୁ ସେତେବେଳକୁ ହୁଏତ ଦେଖାଯିବ ଯେ ଋଣଗ୍ରହୀତା ନାହାନ୍ତି ବା ତାଙ୍କର ବନ୍ଧକ ସମ୍ପତ୍ତିର ମୂଲ୍ୟରେ ହ୍ରାସ

ଘଟଛ । ଋଣର କାଗଜପତ୍ରରେ ହୁଏତ ଗୋଳମାଳ ରହିଛି ଏବଂ ପ୍ରାୟ ୧୦/୧୫ ବର୍ଷ ଅପେକ୍ଷା କରିବା ପରେ କିଛି ମିଳିବି ନପାରେ । ତେଣୁ କୁହାଗଲା ଯେ, ଯଦି ଜଣେ ଗ୍ରାହକ ୧ କୋଟି ଟଙ୍କା ଋଣ ବାକି ରଖିଛି, ତେବେ ସେ ୨୫ଲକ୍ଷ ଟଙ୍କା ନଗଦ ଦେଇଦେଲେ ଅବଶିଷ୍ଟ ୭୫ଲକ୍ଷ ଟଙ୍କାକୁ ସମ୍ପୂର୍ଣ୍ଣ ଛାଡ଼ କରାଯିବ । ବ୍ୟାଙ୍କମାନେ ମଧ୍ୟ ଏ ପରାମର୍ଶକୁ ଗ୍ରହଣ କଲେ । 'ନାହିଁ ମାମୁଁଠାରୁ କଣା ମାମୁଁ ଭଲ' ଏହି ନ୍ୟାୟରେ ୧୫ ବର୍ଷ ଅପେକ୍ଷା କରି ଲାଭ ବା କ'ଣ ? ଧୀରେ ଧୀରେ ଏହି ଆପୋସ ପ୍ରସ୍ତାବକୁ କାର୍ଯ୍ୟକାରୀ କରାଗଲା ଏବଂ ଏହା ଏବେ ବି ଚାଲୁଛି । ଶହ ଶହ କୋଟି ଟଙ୍କାକୁ ଛାଡ଼ କରାଯାଇ କେତେ କୋଟି ଟଙ୍କା ସଂଗ୍ରହ କରାଗଲା । ଘରପୋଡ଼ିରୁ କୁଟା ଖଣ୍ଡିଏ ମିଳିଲେ ବି ଲାଭ । ଏହି ଆପୋସ ପ୍ରସ୍ତାବ ଜରିଆରେ ବହୁ ବିଶିଷ୍ଟ ଶିଳ୍ପପତିମାନେ ଓ ସେମାନଙ୍କର କମ୍ପାନିମାନେ ସୁବିଧାରେ ଖସିଗଲେ ଏବଂ ବ୍ୟାଙ୍କ ଶିଳ୍ପକୁ ଠକିଲେ । ଏପରିକି ଏହି ଆପୋସ ପ୍ରସ୍ତାବ ସପକ୍ଷରେ ରାଜନୈତିକ ନେତାମାନେ ମଧ୍ୟ ଚାପ ପକାଇବାର ଦୃଷ୍ଟାନ୍ତ ରହିଛି ।

ଏପରି କେତେକ କମ୍ପାନି ଅଛି, ଯେଉଁମାନେ ୨/୩ଟି କମ୍ପାନି ଚଳାଉଛନ୍ତି । ସେମାନେ ଗୋଟିଏ କମ୍ପାନିର ଋଣ ଆଦୌ ପରିଶୋଧ କରିବେ ନାହିଁ ଏବଂ ବର୍ଷକୁ ବର୍ଷ କ୍ଷତିରେ ଚାଲୁଛି ବୋଲି ଦର୍ଶାଇବେ । ଅଥଚ ସେହି କମ୍ପାନିର ଅଂଶୀଦାରମାନଙ୍କ ଦ୍ୱାରା ପରିଚାଳିତ ଅନ୍ୟ କମ୍ପାନି ଲାଭରେ ଚାଲୁଥିବ ।

ଘରୋଇ ଉଦ୍ୟୋଗ ଓ କମ୍ପାନିମାନେ ବ୍ୟାଙ୍କରୁ ନେଉଥିବା ଋଣକୁ ନଦେଇ ଘରୋଇକରଣ କରିବାର ଆହ୍ୱାନ ଦେବା ଦେଶର ଅର୍ଥନୀତିକୁ ନିଜ କବଳରେ ରଖି କଳାଟଙ୍କାର ଶାସନକୁ ଚାଲୁ ରଖିବା ଯାହା ଗଣତନ୍ତ୍ର ପ୍ରତି ମାରାତ୍ମକ ବିପଦ । ଜଣେ ଘଣ୍ଟାଟିଏ ଚୋରି କଲେ ତାକୁ ୬ ମାସ ବା ଏକ ବର୍ଷ ଜେଲ୍ ହୁଏ କିନ୍ତୁ ଯେଉଁମାନେ ବ୍ୟାଙ୍କରୁ କୋଟି କୋଟି ଟଙ୍କା ନେଇ ତାକୁ ଫେରାନ୍ତି ନାହିଁ ଅଥଚ ସହରମାନଙ୍କରେ ଅତ୍ୟନ୍ତ ବିଳାସପୂର୍ଣ୍ଣ ଜୀବନ କାଟିବା ସହିତ ସମାଜର ସମ୍ମାନନୀୟ ବ୍ୟକ୍ତିଭାବେ ସଭାମଣ୍ଡନ କରନ୍ତି । ସେମାନେ ଜାତୀୟକରଣ ବ୍ୟାଙ୍କକୁ ଘରୋଇକରଣ କରିବା ପାଇଁ ସ୍ୱର ଉଠାନ୍ତି । ଚାପ ସୃଷ୍ଟି କରନ୍ତି । କର୍ମଚାରୀମାନଙ୍କ ଉପରେ ଅଯଥା ଦୋଷ ଲଦି ଦିଅନ୍ତି ଏବଂ ରାଜନୈତିକ ଅଳିନ୍ଦ ମଧ୍ୟରେ ରହି ଫମ୍ପା ଆଦର୍ଶର ଉପଦେଶ ଓ ବିବୃତ୍ତି ଦିଅନ୍ତି । ଏ ସମ୍ପର୍କରେ ଭାବିବା କ'ଣ ଆଜି ସମସ୍ତ ନାଗରିକମାନଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ନୁହେଁ ?



# ବ୍ୟାଙ୍କମାନଙ୍କରେ ଗ୍ରାହକ ସେବା
# ଶ୍ରମ ସଂସ୍କୃତି ବନାମ ପରିଚାଳନା ସଂସ୍କୃତି

ଏହା ପୂର୍ବରୁ ଆମେ ତିନିଗୋଟି ନିବନ୍ଧରେ ବ୍ୟାଙ୍କ ଶିଳ୍ପ ସମ୍ପର୍କରେ ପାଠକମାନଙ୍କୁ ସମ୍ୟକ୍ ଧାରଣା ଦେଇଛୁ । ବର୍ତ୍ତମାନ ବ୍ୟାଙ୍କର ଗ୍ରାହକ ସେବା ସମ୍ପର୍କରେ, ଶ୍ରମ ସଂସ୍କୃତି ଓ ପରିଚାଳନା ସଂସ୍କୃତି ସମ୍ପର୍କରେ ଆଲୋଚନା କରିବା । ବ୍ୟାଙ୍କ ଘରୋଇକରଣ କରିବାର ଯେଉଁ ସ୍ୱର ଉଠିଛି, ସେଥିରେ କର୍ମଚାରୀମାନଙ୍କ ମଧ୍ୟରେ ଶ୍ରମ ସଂସ୍କୃତିରେ ହ୍ରାସ ଘଟିଛି ବୋଲି ଉଦ୍ୟୋଗପତି, ବ୍ୟବସାୟୀ ଗୋଷ୍ଠୀ, ରାଜନୈତିକ ନେତା, ମନ୍ତ୍ରୀ ଓ ଅନ୍ୟମାନେ କହିବାରେ ଲାଗିଛନ୍ତି । କର୍ମଚାରୀମାନଙ୍କର କାମ ନକରିବାର ମନୋବୃତ୍ତି ଫଳରେ ବ୍ୟାଙ୍କଗୁଡ଼ିକରେ କ୍ଷତି ଘଟୁଛି ଏବଂ ଏପରିକି ଦେଶର ଉଦ୍ୟୋଗଗୁଡ଼ିକ ମଧ୍ୟ କ୍ଷତି ସହୁଛନ୍ତି ।

ପ୍ରଥମେ କର୍ମ ସଂସ୍କୃତି ସମ୍ପର୍କରେ ବିଚାରକରିବା । ଯେକୌଣସି ସମାଜ କ୍ରମସଂସ୍କୃତି ବ୍ୟତୀତ ପ୍ରଗତି ବା ବିକାଶ ଦିଗକୁ ଆଗେଇ ପାରିବ ନାହିଁ । ଯେଉଁ ଯେଉଁ ଉଦ୍ୟୋଗଗୁଡ଼ିକ କ୍ଷତି ସହୁଛନ୍ତି ବା ବନ୍ଦ ହୋଇଯାଉଛନ୍ତି, ତାହା ଶ୍ରମିକମାନଙ୍କ ଯୋଗୁଁ ନୁହେଁ ବରଂ ମାଲିକମାନଙ୍କର କୁପରିଚାଳନା ଓ ଆର୍ଥିକ ବିଶୃଙ୍ଖଳାରୁ ଘଟୁଛି । ଏପରି ହେଉଛି ଯେ, ଶ୍ରମିକ ତା'ର ନ୍ୟାଯ୍ୟ ପାଉଣା ମଧ୍ୟ ପାଉନାହିଁ ।

ସବୁ ଉଦ୍ୟୋଗରେ ପ୍ରାୟତଃ ଟ୍ରେଡ଼ୟୁନିୟନ ରହିଛି । କୌଣସି ଦାୟିତ୍ୱପୂର୍ଣ୍ଣ ଶ୍ରମିକ ସଂଗଠନ କେବେହେଲେ ଶ୍ରମିକମାନେ କାମ ନକରନ୍ତୁ, ଏହା ଶିଖାଏ ନାହିଁ । ହୁଏତ କେତେକ ଶ୍ରମିକ/କର୍ମଚାରୀମାନଙ୍କ ମଧ୍ୟରେ ସେହି କର୍ମକୁଶଳତା, ଗୁଣ ବା ଦକ୍ଷତା ନଥାଇପାରେ କିନ୍ତୁ ସେମାନେ ଉତ୍ପାଦନରେ ସହଯୋଗ କରନ୍ତି ଓ ସେବା କ୍ଷେତ୍ରରେ ଗ୍ରାହକ ସେବା ଅବଶ୍ୟ ଦେଇଥାନ୍ତି । କିନ୍ତୁ ପ୍ରଶ୍ନ ଉଠେ ପରିଚାଳନା ସଂସ୍କୃତିକୁ ଛାଡ଼ି କ'ଣ ଶ୍ରମ ସଂସ୍କୃତିର ବିକାଶ ଘଟିପାରେ ? ସୁସ୍ଥ ପରିଚାଳନା ସଂସ୍କୃତି ବ୍ୟତୀତ ଶ୍ରମ ସଂସ୍କୃତିର ଉନ୍ନତି କଳ୍ପନା କରିବା ଅବାସ୍ତବ । ଉପରସ୍ତରର ପରିଚାଳକ ଓ ବ୍ୟୁରୋକ୍ରାଟମାନଙ୍କର ଖାମଖିଆଲ ମନୋବୃତ୍ତି

ଫଳରେ ସେମାନେ ଶ୍ରମିମାନଙ୍କର କର୍ମସଂସ୍କୃତି ମନୋବୃତ୍ତିକୁ ପ୍ରାୟତଃ ଧ୍ୱଂସ କରିଦିଅନ୍ତି । ସେମାନଙ୍କର ବ୍ୟବହାରରେ କୌଣସି ମୌଳିକ ପରିବର୍ତ୍ତନ ହୁଏନାହିଁ । ସେମାନେ ଅଧୀନସ୍ଥ କର୍ମଚାରୀମାନଙ୍କୁ ସଚ୍ଚୋଟ, ଭଦ୍ର ଓ ଶୃଙ୍ଖଳିତ ହେବାକୁ ଉପଦେଶ ଦେବାବେଳେ ନିଜେ ଅସାଧୁ, ଅଭଦ୍ର ଓ ବିଶୃଙ୍ଖଳ ଆଚରଣ କରନ୍ତି । କାରଣ ସେମାନେ ନିଜକୁ ସର୍ବେସର୍ବା ବୋଲି ଭାବି ସେମାନଙ୍କୁ କେହି ପ୍ରଶ୍ନ କରିପାରିବେ ନାହିଁ ଓ ସେମାନେ ଯାହା ଇଚ୍ଛା ତାହା ପରିପାରିବେ ବୋଲି ବିଚାର ରଖନ୍ତି । ଫଳରେ ଉଦ୍ୟୋଗର କ୍ଷତି ଘଟେ ।

ପରିଚାଳକଙ୍କର ଗୁଣ ଓ ଚରିତ୍ର ପରିଚାଳନା ସଂସ୍କୃତିରେ ପ୍ରତିଫଳିତ ହେବାଦ୍ୱାରା ତାହା କର୍ମ ସଂସ୍କୃତି ଉପରେ ପ୍ରଭାବ ପକାଏ । ଏହାର ଅଭାବ ଫଳରେ ସେମାନେ କର୍ମଚାରୀ/ଶ୍ରମିକମାନଙ୍କୁ ଉତ୍ତମ କର୍ମ କରିବାର ପ୍ରେରଣା ଯୋଗାଇପାରନ୍ତି ନାହିଁ ।

ଗତ ୧୨ ତାରିଖ ଦିନ ଟାଇମ୍‌ସ ଅଫ୍ ଇଣ୍ଡିଆ କାଗଜରେ କୋଣାର୍କ ଟି.ଭି.ରୁ କିପରି ପଇସା ନଦେଇ ବହୁ ବହୁ ବିଶିଷ୍ଟ ଲୋକ ଟି.ଭି. ନେଇଛନ୍ତି ତାହା ପକାଶ ପାଇଛି । ସେହି କମ୍ପାନିର ପରିଚାଳନା ନିର୍ଦ୍ଦେଶକ ମଧ ଟି.ଭି. ନେଇ ଅର୍ଥ ପଇଠ କରିନାହାନ୍ତି ଏବଂ କମ୍ପାନିକୁ ବନ୍ଦ କରିବା କାର୍ଯ୍ୟରେ ଲାଗି ପଡ଼ିଛନ୍ତି । ସରକାରୀ ଉଦ୍ୟୋଗରେ ଗଢ଼ିଉଠିଥିବା କୋଣାର୍କ ଟି.ଭି.ର ଲୋକପ୍ରିୟତାକୁ ଯଦି ଅନୁଧ୍ୟାନ କରିବା, ତେବେ ଏହା ଆଦୌ ବନ୍ଦ ହେବାର ସଂସ୍ଥା ନୁହେଁ । ସମ୍ପୂର୍ଣ୍ଣ ଭାବରେ ପରିଚାଳନାଗତ ତ୍ରୁଟି ଯୋଗୁଁ ଏହାର ଉତ୍ପାଦନ ବାଧାପ୍ରାପ୍ତ ହୋଇଛି ଏବଂ ବନ୍ଦହେବା ଉପରେ । ଓଡ଼ିଶାରେ ଯେତେଗୁଡ଼ିଏ ସରକାରୀ ଉଦ୍ୟୋଗ ବନ୍ଦହୋଇଛି ବା ବନ୍ଦ ହେବାକୁ ଯାଉଛି, ତା' ମୂଳରେ ପରିଚାଳନାଗତ ତ୍ରୁଟି ଓ ଦୁର୍ନୀତି ମୁଖ୍ୟ ଭୂମିକା ନେବ । ପରିଚାଳନାରେ ଯେଉଁମାନେ ମୁଖ୍ୟ ସ୍ଥାନ ମଣ୍ଡନ କରିଛନ୍ତି, ସେମାନେ ହିଁ ଦୁର୍ନୀତି କରୁଛନ୍ତି, ଅର୍ଥ ତୋସରପାତ କରିଛନ୍ତି କିନ୍ତୁ ସେମାନଙ୍କୁ ଦଣ୍ଡ ଦିଆଯାଉ ନାହିଁ ଓ ସେମାନେ କାହାପାଖରେ ଉତ୍ତରଦାୟୀ ହେଉନାହାନ୍ତି । ଏପରିକି ସେମାନଙ୍କ ସହିତ ରହି ଯେଉଁମାନେ ସେମାନଙ୍କୁ ସାହାଯ୍ୟ ସହଯୋଗ କରିଛନ୍ତି, ସେମାନେ ମଧ ସୁରକ୍ଷାବଳୟ ମଧରେ । ଅବଶ୍ୟ ଖବରକାଗଜମାନଙ୍କରେ କିଛି କିଛି ଏ ସମ୍ପର୍କରେ ତଥ୍ୟ ଲୋକଲୋଚନକୁ ଆସୁଛି କିନ୍ତୁ ସେପରି କିଛି ଆଖିଦୃଶିଆ କାର୍ଯ୍ୟାନୁଷ୍ଠାନ ସେମାନଙ୍କ ଉପରେ ଗ୍ରହଣ କରାଯାଉ ନାହିଁ । ସେମାନେ ଦେଶ ଅର୍ଥନୀତିର

ରକ୍ଷକ। ସେମାନେ ଯେତେବେଳେ କର୍ମସଂସ୍କୃତି କଥା କହି ଉପଦେଶ ଦେଉଛନ୍ତି, ସେତେବେଳେ ଲାଗୁଛି ନରାଧମଟିଏ ଶାସ୍ତ୍ରପାଠ କରି ବ୍ୟାଖ୍ୟା କରୁଛି।

ପବ୍ଲିକ୍ ସେକ୍ଟରରେ ଯୋଗଦେଉଥିବା ଉପର ସ୍ତରର ପରିଚାଳକ ଗୋଷ୍ଠୀ ରାଜନୈତିକ ମୁନିବଙ୍କ ଦ୍ୱାରା ନିଯୁକ୍ତି ପାଉଛନ୍ତି। ସେମାନେ ତାଙ୍କ ମୁନିବମାନଙ୍କୁ ସନ୍ତୁଷ୍ଟ କରିବାକୁ ବ୍ୟସ୍ତ ଥିବାବେଳେ ମଧ୍ୟମ ପରିଚାଳକ ଗୋଷ୍ଠୀ ଉପର ପରିଚାଳକ ଗୋଷ୍ଠୀଙ୍କୁ ସନ୍ତୁଷ୍ଟ କରିବାପାଇଁ ନିଜ ହାତ ଚିକ୍କଣ କରୁଛନ୍ତି। ସବୁ ଦୋଷ ଲଦିଦେଉଛନ୍ତି ଶ୍ରମିକ/କର୍ମଚାରୀମାନଙ୍କ ଉପରେ, କାରଣ ଗରିବ ମାଇପ ସମସ୍ତଙ୍କ ଶାଳୀ। ଦେଶର ଏଇ ଅବସ୍ଥାରେ ଶ୍ରମିକମାନଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଛି। ଯଦି ରାଷ୍ଟ୍ରର ଜାତୀୟ ଚରିତ୍ର ସାଧୁତା, ସ୍ୱଚ୍ଛତା ଓ ଶୃଙ୍ଖଳା ଉପରେ ପର୍ଯ୍ୟବେସିତ ନହୁଏ ତେବେ କର୍ମ ସଂସ୍କୃତି ଗଢ଼ିଉଠିବ ନାହିଁ ଏବଂ ବିନା କର୍ମ ସଂସ୍କୃତିରେ ଦେଶର ପ୍ରଗତି ହୋଇପାରିବ ନାହିଁ।

ଦେଶର ଜାତୀୟ ଚରିତ୍ରରେ ଏହି ପରିବର୍ତ୍ତନ ଆଣିବାକୁ କାହାରି ଆଦୌ ଚେଷ୍ଟା ମଧ୍ୟ ନାହିଁ। ରାଜନୈତିକ ଦଳମାନେ ନିଜ ନିଜର ସୁବିଧାବାଦ ଭୂମିକାରେ ଠିଆହୋଇ ଜାତୀୟ ଚରିତ୍ରର ଏ ଧାରାକୁ ପରିବର୍ତ୍ତନ କରିବାକୁ ଚାହୁଁନାହାନ୍ତି। ଶ୍ରମିକମାନେ କି ଦୁଃଖ ଓ କଷ୍ଟ ଭୋଗକରୁଛନ୍ତି, ସେ ବିଷୟରେ ସେମାନେ କେବେ ଚିନ୍ତା ମଧ୍ୟ କରନ୍ତି ନାହିଁ। କିନ୍ତୁ ସେମାନେ କର୍ମ-ସଂସ୍କୃତିର ଦ୍ୱାହିଦେଇ ସବୁ ଦୋଷକୁ ଶ୍ରମିକ ଓ କର୍ମଚାରୀମାନଙ୍କ ଉପରେ ଲଦି ଦିଅନ୍ତି।

ବ୍ୟାଙ୍କ ଶିଳ୍ପରେ ମଧ୍ୟ କର୍ମଚାରୀମାନଙ୍କ ଉପରେ ଦୋଷ ଦିଆଯାଉଛି। ଉପର ସ୍ତରରେ ଦୁର୍ନୀତି, ପ୍ରିୟାପ୍ରୀତି ତୋଷଣ ଓ ପରିଚାଳନା ସଂସ୍କୃତିର ଅଭାବ ଯେ ତଳ ସ୍ତରରେ ପ୍ରଭାବିତ ନହେବ, ତାହା କୁହାଯାଇ ନପାରେ। କିନ୍ତୁ ବ୍ୟାଙ୍କ କାଉଣ୍ଟରରେ ଯେଉଁ କ୍ଲର୍କମାନେ କାମ କରୁଛନ୍ତି, ସେମାନେ ଗ୍ରାହକ ସେବା ଦେବାକୁ ଯଥେଷ୍ଟ ଭାବରେ ସଚେଷ୍ଟ ଅଛନ୍ତି। କାଁ ଭାଁ ଅବଶ୍ୟ ଏହି ସେବାରେ ଶିଥିଳତା ରହିଛି, କିନ୍ତୁ ମୋଟାମୋଟି ଭାବରେ ଏହା ଅନ୍ୟ କ୍ଷେତ୍ରଠାରୁ ଯଥେଷ୍ଟ ଉର୍ଦ୍ଧ୍ୱରେ। ବିଶେଷ କରି ସହରମାନଙ୍କରେ ବ୍ୟାଙ୍କର ଗ୍ରାହକମାନେ କେବେକେବେ ନିଜର ଅସନ୍ତୋଷ ପ୍ରକାଶ କରନ୍ତି। ଅଭିଯୋଗପତ୍ର ମଧ୍ୟ ଦାଖଲ କରନ୍ତି। ବଡ଼ ବଡ଼ ସହରମାନଙ୍କରେ ସବୁଠି ଗ୍ରାହକର କାର୍ଯ୍ୟରେ ବିଳମ୍ବ ହୁଏ। ଉଦାହରଣ ସ୍ୱରୂପ, ବସ୍‌ରେ ଯାଉଛନ୍ତି, ଖୁଚୁରା ପଇସା ନଦେଲେ ବସ୍‌ବାଲା ଆପଣଙ୍କୁ ନେବନାହିଁ। ବସ୍ ତା'ର ନିର୍ଦ୍ଦିଷ୍ଟ ସ୍ଥାନରେ ନରହି ଦୂରରେ ଦୂରରେ ରହିବ। ବସ୍ ଯାତ୍ରୀଙ୍କୁ

ଦୌଡ଼ିକରି ଯିବାକୁ ହେବ । ଠିକ୍ ସେହିପରି ବିଦ୍ୟୁତ୍ । ଲୋଡ଼ ସେଡ଼ିଙ୍ଗ ବା ବିଜୁଳି ବନ୍ଦ । କାନମୁଣ୍ଡା ଆଉଁସି ବସିରହିବାକୁ ହେବ । ଖବର କାଗଜବାଲା, ଦୁଧବାଲା, ପୋଷ୍ଟମ୍ୟାନ ସମସ୍ତେ ଲେଟରେ ଆସିଲେ ମଧ୍ୟ କେହି କମ୍ପ୍ଲେନ କରନ୍ତି ନାହିଁ । ଟ୍ରେନ ଲେଟ, ପ୍ଲେନ ଲେଟ୍, ଟିକେଟ କାଉଣ୍ଟରରେ ଘଣ୍ଟା ଘଣ୍ଟା ଧରି ଛିଡ଼ାହେବା, ପେଟ୍ରୋଲ, ଗ୍ୟାସଠାରୁ ଚିନି ଆଣିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହୁଏ । କେହି କ'ଣ କେବେ ଅଭିଯୋଗ କରୁଛି ? ସବୁଠି ଅହେତୁକ ବିଳମ୍ବ ଓ ଅଭାବ ଅସୁବିଧା ଲାଗିରହିଥିଲେ ମଧ୍ୟ ବ୍ୟାଙ୍କ ସେବାରେ ବିଳମ୍ବ ହେଲେ ଅଭିଯୋଗ ହୁଏ । କିନ୍ତୁ ବିଳମ୍ବଜନିତ କାରଣ ସମ୍ପର୍କରେ ଗ୍ରାହକମାନେ ସବୁ ସମୟରେ ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ଏହାର ଅର୍ଥ ନୁହେଁ ଯେ ବ୍ୟାଙ୍କର କର୍ମଚାରୀମାନେ ଜାଣିଶୁଣି ଗ୍ରାହକ ସେବାକୁ ବିଳମ୍ବିତ କରିବେ ।

ବ୍ୟାଙ୍କରେ କେତେଗୁଡ଼ିଏ ଅସୁବିଧା ରହିଛି । ଦିନକୁ ଦିନ ଗ୍ରାହକ ସଂଖ୍ୟା ବଢ଼ିଚାଲିଥିଲାବେଳେ ସେହି ଅନୁପାତରେ ଷ୍ଟାଫ୍ ନାହାନ୍ତି । କାରଣ ସରକାର ନିଯୁକ୍ତି ସଂକୋଚନ ନୀତି ଗ୍ରହଣ କରିଛନ୍ତି । କର୍ମଚାରୀମାନଙ୍କୁ ଅଧିକ ସମୟ କାମ କରିବାକୁ ବ୍ୟାଙ୍କମାନଙ୍କରେ ଓଭର ଟାଇମ୍ ଦିଆଯାଉ ନାହିଁ । ବ୍ୟାଙ୍କମାନଙ୍କରେ ବର୍ତ୍ତମାନ ଅହେତୁକ ପ୍ରତିଯୋଗିତା ମଧ୍ୟ ବୃଦ୍ଧିପାଇଛି । ବିଦେଶୀ ବ୍ୟାଙ୍କମାନେ ଦେଉଥିବା ସେବାପାଇଁ ଅଧିକ ସେବାଖର୍ଚ୍ଚ ନେବାବେଳେ ଜାତୀୟକରଣ ବ୍ୟାଙ୍କରେ ତାହା କମ୍ । ଫଳରେ ଗ୍ରାହକମାନଙ୍କର ଭିଡ଼ ହେତୁ ସେବା ବ୍ୟାହତ ହେବା ସ୍ୱାଭାବିକ ।

ବ୍ୟାଙ୍କର ଦେଣ ନେଣ ସମ୍ପର୍କରେ ବହୁ ଗ୍ରାହକମାନଙ୍କର ସଠିକ୍ ଧାରଣା ମଧ୍ୟନାହିଁ । କାରଣ ଆଜିକାଲି ଯେପରି ଫ୍ରଡ଼ ବୃଦ୍ଧିପାଉଛି, ଜାଲ୍ ନୋଟ୍ ଆସୁଛି, ଦସ୍ତଖତ ଜାଲ୍‌କରି ଟଙ୍କା ଉଠାଇବାର ଚେଷ୍ଟା ହେଉଛି, ସେଥିପାଇଁ ବହୁ ସାବଧାନ କାର୍ଯ୍ୟ କରିବାର ଅଛି । ନଚେତ୍ ବିଚରା କର୍ମଚାରୀଙ୍କୁ କେବଳ ଅର୍ଥ ପୈଠ କରିବାକୁ ହେବନି, ବରଂ ଦଣ୍ଡ ମଧ୍ୟ ଭୋଗ କରିବାକୁ ହେବ ।

ବ୍ୟାଙ୍କ କର୍ମଚାରୀ ମଧ୍ୟ ଅନ୍ୟାନ୍ୟ କର୍ମଚାରୀମାନଙ୍କ ପରି ବସ୍‌ରେ ବା ଟ୍ରେନ୍‌ରେ ଆସୁଛି ଏବଂ ସବପ୍ରକାର ଅସୁବିଧାର ସାମନା କରିବାକୁ ହେଉଛି । କେବେ କେବେ ହୁଏତ ବ୍ୟାଙ୍କରେ ବିଳମ୍ବରେ ପହଞ୍ଚିପାରେ କିନ୍ତୁ ଗ୍ରାହକ ଅପେକ୍ଷା କରିବାକୁ ନାରାଜ । ବିଶେଷ କରି ଯେଉଁ ଉଦ୍ୟୋଗପତିମାନେ ବ୍ୟାଙ୍କ ଋଣ ନିଅନ୍ତି,

ସେମାନେ କେବେ ବ୍ୟାଙ୍କ କାଉଣ୍ଟରରେ ଠିଆ ହୁଅନ୍ତି ନାହିଁ । ସେମାନଙ୍କ ପାଖରେ କାମ କରୁଥିବା କର୍ମଚାରୀଠାରୁ ସେମାନେ ବେଶୀ କାମ ଆଦାୟ କରିବାକୁ ଚାହାନ୍ତି । ଫଳରେ କାଉଣ୍ଟରରେ ବିଳମ୍ବ ହେଲେ ସେମାନଙ୍କୁ ଗାଳି ଫଜିଦ୍ ଶୁଣିବାକୁ ହୁଏ ଏବଂ ବ୍ୟାଙ୍କ କର୍ମଚାରୀମାନଙ୍କ ବିରୋଧରେ ଅଭିଯୋଗ ସେମାନେ ଉପରିସ୍ଥ କର୍ମକର୍ତ୍ତାଙ୍କ ପାଖରେ ଦାଖଲ କରନ୍ତି ।

ଏହା ସତ୍ତ୍ୱେ ମଧ୍ୟ କର୍ମଚାରୀମାନେ ଦକ୍ଷତାର ସହ ନମ୍ର ଭାବରେ ଚଞ୍ଚଳ ଗ୍ରାହକ ସେବା ଯୋଗାଇଦେବାକୁ କେହି ଅସ୍ୱୀକାର କରିବେ ନାହିଁ । ଯଦି ଘରୋଇ କ୍ଷେତ୍ରଠାରୁ ସରକାରୀ କ୍ଷେତ୍ର ପର୍ଯ୍ୟନ୍ତ ଗ୍ରାହକ ସେବା ସମ୍ପର୍କରେ ଏକ ଅନୁଧ୍ୟାନ କରାଯାଏ ତେବେ ବ୍ୟାଙ୍କ କ୍ଷେତ୍ରରେ କର୍ମଚାରୀମାନଙ୍କର ଗ୍ରାହକ ସେବା ନିଶ୍ଚିତ ଭାବରେ ସବୁଠାରୁ ବେଶୀ ପ୍ରଶଂସନୀୟ । ଏସବୁ ସତ୍ତ୍ୱେ କର୍ମଚାରୀମାନଙ୍କ ମୁଣ୍ଡରେ ଅଠାବୋଳି ବ୍ୟାଙ୍କକୁ ଘରୋଇକରଣ କରିବାର କୌଣସି ଯୁକ୍ତି ନାହିଁ । ଏହା କରିବା ଦ୍ୱାରା କେବଳ କେତେକ ମୁଷ୍ଟିମେୟ ଲୋକଙ୍କର ସ୍ୱାର୍ଥର ସୁରକ୍ଷା ସିନା ହେବ, ଜାତୀୟ ବିକାଶ ଓ ପ୍ରଗତିରେ କୌଣସି ବିଶେଷ ପରିବର୍ତ୍ତନ ହେବନାହିଁ ।



# ରାଷ୍ଟ୍ରାୟତ୍ତ ବ୍ୟାଙ୍କର ଅନାଦେୟ ଋଣ

ବ୍ୟାଙ୍କ ଋଣ, ବ୍ୟାଙ୍କ ବ୍ୟବସ୍ଥା ଓ ବ୍ୟାଙ୍କ ଘରୋଇକରଣ ସମ୍ପର୍କରେ ବର୍ତ୍ତମାନ ବହୁକଥା କୁହାଯାଉଛି ଓ ଖବରକାଗଜରେ ଲେଖାଯାଉଛି। ବ୍ୟାଙ୍କରେ କାର୍ଯ୍ୟ କରୁଥିବା କର୍ମଚାରୀମାନେ ବ୍ୟାଙ୍କ ଘରୋଇକରଣ ବିରୁଦ୍ଧରେ ବାରମ୍ବାର ଆନ୍ଦୋଳନ କରୁଛନ୍ତି। କେତେକ ହୁଏତ ମନେ କରିପାରନ୍ତି ବ୍ୟାଙ୍କଗୁଡ଼ିକ ଘରୋଇକରଣ ହେଲେ ଆର୍ଥିକ ବ୍ୟବସ୍ଥାର ସୁଧାର ହେବ, ସହଜରେ ଋଣ ମିଳିବ ଏବଂ ବ୍ୟାଙ୍କର ଗ୍ରାହକ ସେବାରେ ଉନ୍ନତି ଘଟିବ। ଏପରି ଭାବିବାର କୌଣସି ଯୁକ୍ତି ନାହିଁ। ବ୍ୟାଙ୍କ ଜାତୀୟକରଣ ହେବାପରେ ଯେତେ ସଂଖ୍ୟାରେ ଶାଖା ଖୋଲିଛି, କର୍ମଚାରୀ ନିଯୁକ୍ତ ହୋଇଛନ୍ତି, ଜମା ସଂଗ୍ରହ ହୋଇଛି ଓ ଋଣ ପ୍ରଦାନ କରାଯାଇଛି ତା'ର ପରିସଂଖ୍ୟାନ ଦେଲେ, ଏପରି ବିକାଶ ଜାତୀୟକରଣ ପୂର୍ବରୁ କେବେ ହୋଇନଥିଲା। ଗତ ୧୫ ବର୍ଷ ମଧ୍ୟରେ ଘରୋଇ କ୍ଷେତ୍ରରେ ଥିବା କେତେଗୁଡ଼ିଏ ବ୍ୟାଙ୍କ ପରିଚାଳନାଗତ ତ୍ରୁଟି ଓ ଅତ୍ୟଧିକ କ୍ଷତି ଫଳରେ ବନ୍ଦହୋଇ ଯାଇଛି ଏବଂ ସେଗୁଡ଼ିକୁ ଜାତୀୟକରଣ ବ୍ୟାଙ୍କଗୁଡ଼ିକ ସହିତ ମିଶାଇ ଦିଆଯାଇଛି। ଉଦାହରଣ ସ୍ୱରୂପ ଲକ୍ଷ୍ମୀ କମର୍ସିଆଲ ବ୍ୟାଙ୍କ, ଲିଃ, ଦିଲ୍ଲୀ, କାନାରା ବ୍ୟାଙ୍କ ସହିତ, ହିନ୍ଦୁସ୍ଥାନ କମର୍ସିଆଲ ବ୍ୟାଙ୍କ ଲିଃ ୟୁପି ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ ସହିତ ୟୁନାଇଟେଡ଼ ଇଣ୍ଡଷ୍ଟ୍ରିଆଲ ବ୍ୟାଙ୍କ ଲିଃ (ପଶ୍ଚିମବଙ୍ଗ) ଆଲ୍ଲାହାବାଦ ବ୍ୟାଙ୍କ ସହିତ ପୂର୍ବାଞ୍ଚଳ ବ୍ୟାଙ୍କ ଲିଃ, ଆସାମ ସେଣ୍ଟ୍ରାଲ ବ୍ୟାଙ୍କ ଅଫ ଇଣ୍ଡିଆ ସହିତ ବ୍ୟାଙ୍କ ଅଫ ତାମିଲନାଡୁ ଲିଃ ତାମିଲନାଡୁ, ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କ ସହିତ ବ୍ୟାଙ୍କ ଅଫ୍ ତାଞ୍ଜାଭୋର ଲିଃ ତାମିଲନାଡୁ, ଇଣ୍ଡଆନ ବ୍ୟାଙ୍କ ସହିତ ବ୍ୟାଙ୍କ ଅଫ୍ କୋଚିନ ଲିଃ, କେରଳ, ଭାରତୀୟ ଷ୍ଟେଟବ୍ୟାଙ୍କ ସହିତ, ପାରୁର ସେଣ୍ଟ୍ରାଲ ବ୍ୟାଙ୍କ ଲିଃ, କେରଳ ବ୍ୟାଙ୍କ ଅଫ ଇଣ୍ଡିଆ ସହିତ, ବ୍ୟାଙ୍କ ଅଫ କାରାଡ଼ ଲିଃ, ମହାରାଷ୍ଟ୍ର ବ୍ୟାଙ୍କ ଅଫ ଇଣ୍ଡିଆ ବ୍ରେଡ଼ର୍ସ ବ୍ୟାଙ୍କ ଲିଃ ହରିଆନା ବ୍ୟାଙ୍କ ଅଫ ବରୋଦା ସହିତ, ସିକିମ ବ୍ୟାଙ୍କ ଲିଃ, ସିକିମ ୟୁନିୟନ ବ୍ୟାଙ୍କ ଅଫ ଇଣ୍ଡିଆ ସହିତ ବରେଲି ବ୍ୟାଙ୍କିଂ କର୍ପୋରେସନ ଲିଃ, ୟୁପି ବ୍ୟାଙ୍କ ଅଫ ବରୋଦା ସହିତ କାଶିନାଥ ସେଠ ବ୍ୟାଙ୍କ ଲିଃ, ଉତ୍ତରପ୍ରଦେଶ ଷ୍ଟେଟବ୍ୟାଙ୍କ ଅଫ ଇଣ୍ଡିଆ ସହିତ ପଞ୍ଜାବ

ସମବାୟ ବ୍ୟାଙ୍କ ଲିଃ, ପଞ୍ଜାବ ଓରିଏଣ୍ଟାଲ ବ୍ୟାଙ୍କ ଅଫ କମର୍ସ ସହିତ ବ୍ୟାଙ୍କ ଅଫ ବିହାର ଲିମିଟେଡ୍, ବିହାର, ଭାରତୀୟ ଷ୍ଟେଟବ୍ୟାଙ୍କ ସହିତ ମିରାଜ ଷ୍ଟେଟବ୍ୟାଙ୍କ ଲିଃ, ମହାରାଷ୍ଟ୍ର ୟୁନିୟନ ବ୍ୟାଙ୍କ ସହିତ ମିଶିଛି । ଯଦି ଘରୋଇ ଉଦ୍ୟୋଗରେ ଥିବା ବ୍ୟାଙ୍କଗୁଡ଼ିକ ଜାତୀୟକରଣ ବ୍ୟାଙ୍କ ସହିତ ମିଶୁଛି, ତେବେ ଜାତୀୟକରଣ ବ୍ୟାଙ୍କଗୁଡ଼ିକୁ ଘରୋଇକରଣ କରିବାର କ'ଣ ଆବଶ୍ୟକତା ରହିଛି ମନରେ ଏ ପ୍ରଶ୍ନ ସ୍ୱତଃ ଉଠୁଛି । ଜାତୀୟକରଣ ବ୍ୟାଙ୍କକୁ ଘରୋଇକରଣ କରିବା ପାଇଁ ଯେଉଁ କାରଣ ଦର୍ଶାଯାଉଛି, ସେଥିରେ କୁହାଯାଇଛି ଯେ, ବ୍ୟାଙ୍କମାନେ ଲାଭ କରିବା ପରିବର୍ତ୍ତେ ପ୍ରତ୍ୟେକ ବର୍ଷ କ୍ଷତି କରୁଛନ୍ତି । ଏ କ୍ଷତିକୁ ସରକାର ଭରଣା କରିପାରିବେ ନାହିଁ । ଜାତୀୟକରଣ ହେବା ପରେ ବ୍ୟାଙ୍କର ପରିସର ଓ ପରିସୀମା ଏତେ ବଢ଼ିଯାଇଛି ଯେ, ତାହା ଶ୍ରେଣୀଗତ ବ୍ୟାଙ୍କିଙ୍ଗ ମଧ୍ୟରେ ସୀମାବଦ୍ଧ ନହୋଇ ଜନଗଣଙ୍କର ବ୍ୟାଙ୍କିଙ୍ଗରେ ରୂପାନ୍ତରିତ ହେବା ଫଳରେ ଶ୍ରମିକ, କୃଷକ, ଭୂମିହୀନ ଚାଷୀ, କ୍ଷୁଦ୍ର ଓ ନାମମାତ୍ର ବ୍ୟବସାୟୀ ବ୍ୟାଙ୍କରୁ ଋଣ ପାଇବାକୁ ସକ୍ଷମ ହୋଇଛନ୍ତି । ସାମାଜିକ ବ୍ୟାଙ୍କିଙ୍ଗ ବ୍ୟବସ୍ଥା ଦ୍ୱାରା ସାଧାରଣ ଲୋକେ ବ୍ୟାଙ୍କ ବ୍ୟବସ୍ଥାର ସୁଫଳ ପାଉଛନ୍ତି । କାଁ ଭାଁ କେଉଁଠି କେମିତି ହୁଏତ ତ୍ରୁଟି ବିଚ୍ୟୁତି ପରିଲକ୍ଷିତ ହୋଇଛି । କିନ୍ତୁ ତାହା ସମଗ୍ର ଜାତୀୟକରଣ ବ୍ୟାଙ୍କର ଅସଫଳତାକୁ ସୂଚାଏ ନାହିଁ । ଏସବୁ ସତ୍ତ୍ୱେ ବ୍ୟାଙ୍କଗୁଡ଼ିକରେ କ୍ଷତି କାହିଁକି ହେଉଛି ? ଏହାର କାରଣ ଅନୁଧ୍ୟାନ କଲେ ଦେଖାଯାଏ ଗତ ମାର୍ଚ୍ଚ ୧୯୯୭ ମସିହା ଶେଷ ସୁଦ୍ଧା ବ୍ୟାଙ୍କଗୁଡ଼ିକରେ ଅନାଦେୟ ଋଣର ପରିମାଣ ଥିଲା ୪୭,୩୦୦ କୋଟି, ମାର୍ଚ୍ଚ ୩୧, ୧୯୯୮ରେ ୫୦, ୮୧୫ କୋଟି ଓ ମାର୍ଚ୍ଚ ୩୧ ୧୯୯୯ ଶେଷ ସୁଦ୍ଧା ୫୮, ୫୫୪ କୋଟି ଟଙ୍କା । ଏହି ୫୮ ହଜାର କୋଟି ଟଙ୍କାର ଅନାଦେୟ ଋଣ ମଧ୍ୟରୁ ଭାରତର ୨୦୦ ଜଣ ଉଦ୍ୟୋଗପତିଙ୍କ ଉପରେ ୧୧ ହଜାର କୋଟି ଟଙ୍କା ବାକି । ଯେଉଁ ଉଦ୍ୟୋଗଗୁଡ଼ିକରେ ୧କୋଟିଠାରୁ ଉର୍ଦ୍ଧ୍ୱ ଟଙ୍କା ବାକି ରହିଛି ସେହିପରି କମ୍ପାନିଙ୍କ ସଂଖ୍ୟା ହେଉଛି ୪୪୬୭ ।

ଯେଉଁ କମ୍ପାନିମାନେ ଋଣନେଇ ତାକୁ ପଇଠ ନକରି ଅନାଦେୟ ଋଣରେ ପରିଣତ କରୁଛନ୍ତି, ସେମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରାଯାଇ ପାରୁନାହିଁ ଓ ଋଣ ଆଦାୟ ହୋଇପାରୁନି । ଗତ ଦୁଇଦିନ ତଳେ କଲିକତାଠାରେକେନ୍ଦ୍ର ଅର୍ଥମନ୍ତ୍ରୀ ଋଣ ଖିଲାପକାରୀଙ୍କ ପରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି କହିଛନ୍ତି କିନ୍ତୁ କେଉଁ କେଉଁ ଉଦ୍ୟୋପତିମାନେ କେତେ

କେତେ ଋଣ ଖିଲାପ କରିଛନ୍ତି ସେମାନଙ୍କର ନାମ ପ୍ରକାଶ କରିନାହାନ୍ତି । ପ୍ରଥମ ଥର ପାଇଁ ବ୍ୟାଙ୍କ କର୍ମଚାରୀମାନେ ସେମାନଙ୍କର ସଂଗଠନ ଅଖିଳ ଭାରତ ବ୍ୟାଙ୍କ କର୍ମଚାରୀ ସଂଘ ନେତୃତ୍ୱରେ ଏନେଇ କେବଳ ଉଦବେଗ ପ୍ରକାଶ କରିନାହାନ୍ତି ବରଂ ସେମାନଙ୍କର ନାମ ଓ କାହା ଉପରେ କେତେ ପରିମାଣର ଅର୍ଥ ବାକି ରହିଛି ତା'ର ତାଲିକା ମଧ୍ୟ ପ୍ରକାଶ କରିଛନ୍ତି । ବ୍ୟାଙ୍କରେ ଜମାଥିବା ଅର୍ଥ ସାଧାରଣ ଲୋକମାନଙ୍କର । ଏହି ଅର୍ଥକୁ ସ୍ପଷ୍ଟ ଦିବାଲୋକରେ ଲୁଟ କରିବାର ଏହି ଅଭିପ୍ରାୟକୁ ଜନସାଧାରଣ ଆଦୌ ବରଦାସ୍ତ କରିବା ଉଚିତ ନୁହେଁ । ଏହି ଅନାଦେୟ ଋଣ କ'ଣ ଓ ଏହା କିପରି ସୃଷ୍ଟି ହେଉଛି ଏ ସମ୍ପର୍କରେ ସମ୍ୟକ୍ ଧାରଣା ହେବା ଉଚିତ୍ । ବ୍ୟାଙ୍କର ଜଣେ ଗରାଖ ବ୍ୟାଙ୍କରୁ ଋଣ ନେଲା । ସେ ସେହି ଋଣର ମୂଳଧନ ଓ ସୁଧକୁ ପରିଶୋଧ କଲାନାହିଁ । ବହୁବର୍ଷ ଧରି ଏ ଋଣ ପରିମାଣକୁ କୁହାଯାଉଛି ଅନାଦେୟ ଋଣ । ଇଂରାଜୀରେ ଆସେଟ୍‌ର ଅର୍ଥ ହେଉଛି ଆସ୍ତି । ବର୍ଷ ବର୍ଷ ଧରି ହଜାର ହଜାର କୋଟି ଟଙ୍କାର ଋଣ ଆଦାୟ ହେଉନି ଅଥଚ ତାକୁ ବ୍ୟାଙ୍କର ଆସେଟ୍ ବୋଲି କୁହାଯିବା ପରିବର୍ତ୍ତେ ଲାଏବିଲିଟି ବା ଦାୟିତ୍ୱ କୁହାଯିବା ଉଚିତ୍ ।

ଏହି ନନ୍‌ପର୍ମିଂ ଆସେଟ୍‌କୁ ଆମେ ସାଧାରଣ ଅର୍ଥରେ ବୁଝିବାକୁ ଚେଷ୍ଟା କରିବା । ମନେକର, ଆପଣ ମୋର ଘରକୁ ଆସିଲେ । ମୋ ଘରେ ଚା' ପିଇଲେ । କିଛି ସମୟ ବସି କଥାବାର୍ତ୍ତା ହୋଇ ସମୟ କଟାଇଲେ ଏବଂ ଆପଣ ଚାଲିଯିବା ପରେ ମୁଁ ଦେଖିଲି ମୋର ହାତବନ୍ଧା ଘଣ୍ଟାଟି ନାହିଁ । ମୁଁ ଜାଣେ ଆପଣ ମୋ ଘଣ୍ଟାଟିକୁ ଚୋରି କରିଛନ୍ତି । ମୁଁ ଥାନାରେ ଏତଲା ଦେଲି । ପୁଲିସ୍ ଆସି ଆପଣଙ୍କ ଘର ଖାନତଲାସ କଲା, ଆପଣଙ୍କ ଘରୁ ଘଣ୍ଟା ପାଇଲା, ଆରେଷ୍ଟ କଲା ଓ କେଶ୍ ଫାଇଲ୍ ହେଲା । ବିଚାରପତି ଆପଣଙ୍କୁ ଦୋଷୀ ସାବ୍ୟସ୍ତ କଲେ ଓ ଛ'ମାସ ପାଇଁ ଜେଲ୍‌କୁ ପଠାଇ ଦେଲେ । ଆପଣ ଜଣେ ଘଣ୍ଟାଚୋର ବୋଲି ପରିଚିତ ହେଲେ ।

କିନ୍ତୁ ଆପଣ ବ୍ୟାଙ୍କକୁ ଆସନ୍ତୁ । ଋଣ ନେବାପାଇଁ ଆଲୋଚନା କରନ୍ତୁ । ଏକକୋଟି ଟଙ୍କା ଋଣ ଉଠାନ୍ତୁ ଏବଂ ବର୍ଷ ବର୍ଷ ଧରି ଏହି ଋଣର ମୂଳଧନ ଓ ସୁଧକୁ ପରିଶୋଧ କରନ୍ତୁ ନାହିଁ । ଏଥିପାଇଁ କେହି ଆପଣଙ୍କୁ ବ୍ୟାଙ୍କ ଚୋର ବୋଲି କହିବେ ନାହିଁ । ଏପରିକି ଆପଣଙ୍କ ନାମକୁ ମଧ୍ୟ ସଂସଦ ସଭ୍ୟଙ୍କ ନିକଟରେ ପ୍ରକାଶ କରାଯିବ ନାହିଁ । କେବଳ ଆପଣଙ୍କୁ ଅତି ସମ୍ମାନଜନକ ଉପାଧି ପ୍ରଦାନ କରି କୁହାଯିବ ଆପଣ ଋଣ ଖିଲାପକାରୀ । ଯଦିଓ ଆପଣ

ଜମାକାରୀଙ୍କ ଅର୍ଥକୁ ହଡ଼ପ କରିଛନ୍ତି ଏବଂ ତାହାକୁ ଫେରେଇବାକୁ ରାଜି ନୁହନ୍ତି । କିଛିବର୍ଷ ପୂର୍ବେ ସାଧାରଣ ଲୋକମାନଙ୍କର ଦୃଷ୍ଟିକୁ ଏହା ଆଦୌ ଆସୁନଥିଲା । କିଛିଦିନ ପୂର୍ବେ ବ୍ୟାଙ୍କ ବ୍ୟବସ୍ଥାରେ ନୂତନ ନିୟମ ଲାଗୁହେବା ଫଳରେ କ୍ରମେ କ୍ରମେ କେତେ ପରିମାଣରେ ବ୍ୟାଙ୍କର ଅନାଦେୟ ଋଣ ବଢ଼ିଚାଲିଚି, ତାହା ଜଣାପଡ଼ିଲା । ବର୍ତ୍ତମାନ ଏହି ଋଣର ପରିମାଣ ୫୮ ହଜାର କୋଟି ଟଙ୍କା ।

ବ୍ୟାଙ୍କ ଋଣକୁ ଚାରିଗୋଟି ଭାଗରେ ଚିହ୍ନିତ କରାଯାଏ । ଷ୍ଟାଣ୍ଡାର୍ଡ଼, ସବଷ୍ଟାଣ୍ଡାର୍ଡ଼, ଡ଼ାଉଟଫୁଲ, ଲସ୍ । ବର୍ଷକୁ ବର୍ଷ ବ୍ୟାଙ୍କଗୁଡ଼ିକ ଋଣ ଖାତାକୁ ଏହି ଅନୁସାରେ ଶ୍ରେଣୀକୃତ କରାଯାଏ । ଏପରି ଶ୍ରେଣୀକୃତ କରିବାର କାରଣ ହେଉଛି ରିଜର୍ଭ ବ୍ୟାଙ୍କ ଅଫ ଇଣ୍ଡିଆର ନିର୍ଦ୍ଦେଶକ୍ରମେ ବ୍ୟାଙ୍କମାନେ ସେମାନଙ୍କର ମୋଟ ଲାଭରୁ ଏହି ଋଣପାଇଁ ବ୍ୟବସ୍ଥା କରିବା । ଏହାର ଅର୍ଥ ହେଉଛି ବ୍ୟାଙ୍କ ତାର ମୋଟ ଲାଭରୁ ଏହି ଋଣର ସମୁଦାୟ ପରିମାଣକୁ ଅଲଗା କରି ରଖିବେ । ବ୍ୟାଙ୍କର ଲାଭ ଉପରେ ଏହାର ପ୍ରଭାବ ନିଶ୍ଚିତ ପଡ଼ିବ । ଯେଉଁ ଚାରିଗୋଟି ପର୍ଯ୍ୟାୟରେ ଋଣଗୁଡ଼ିକୁ ଶ୍ରେଣୀକୃତ କରାଯାଇଥିବ, ସେହି ଅନୁସାରେ ଅର୍ଥକୁ ଲାଭରୁ ବ୍ୟବସ୍ଥା କରିବାକୁ ହେବ ।

ବ୍ୟାଙ୍କମାନେ ବହୁତ ଲାଭ କରୁଛନ୍ତି । ବ୍ୟାଙ୍କର ମୋଟ ଲାଭରୁ ସେହି ଉଦ୍ୟୋଗର ସ୍ୱାସ୍ଥ୍ୟାବସ୍ଥା କିପରି ତାହା ବୁଝାଯାଏ । ଯଦି ପ୍ରତ୍ୟେକ ବର୍ଷ ବ୍ୟାଙ୍କର ଏହି ମୋଟ ଲାଭରୁ ଋଣର ପରିମାଣକୁ ପୃଥକ୍ କରାଯାଏ, ତେବେ ବାସ୍ତବ ଲାଭ ନିଶ୍ଚିତ ରୂପେ ତଳକୁ ଖସିବ । ଆମେ ୧୯୯୮-୯୯ରେ ଜାତୀୟକରଣ ବ୍ୟାଙ୍କରେ ହୋଇଥିବା ଲାଭ ସମ୍ପର୍କରେ ଧାରଣା କରିବା ।

୧୯୯୭-୯୮ରେ ବ୍ୟାଙ୍କର ମୋଟ ଲାଭ - ୧୦୨୨୭୪ କୋଟି, ଅନାଦେୟ ଋଣ ବାବଦକୁ ବ୍ୟବସ୍ଥା - ୫୨୯୨ କୋଟି । ବାସ୍ତବ ଲାଭ (ନେଟ ପ୍ରଫିଟ୍) - ୪୯୮୨ କୋଟି, ୧୯୯୮-୯୯ରେ ବ୍ୟାଙ୍କର ମୋଟ ଲାଭ - ୧୦୫୭୭ କୋଟି । ଅନାଦେୟ ଋଣ ବାବଦକୁ ବ୍ୟବସ୍ଥା - ୭୩୧୯ କୋଟି । ବାସ୍ତବ ଲାଭ - ୩୨୫୮ କୋଟି ।

ଏଥିରୁ ଆମେ କହିପାରିବା କି ଜାତୀୟକରଣ ବ୍ୟାଙ୍କଗୁଡ଼ିକ କ୍ଷତିରେ ଚାଲୁଛନ୍ତି ଏବଂ ଏଗୁଡ଼ିକୁ ଘରୋଇକରଣ କରିବାର ଆବଶ୍ୟକତା ଅଛି ? କିପରି ଭାବରେ ଋଣ ଖିଲାପକାରୀମାନେ ବ୍ୟାଙ୍କକୁ ଠକୁଛନ୍ତି ଏବଂ ଋଣ ଦେଉନାହାନ୍ତି, ତାହା ପରବର୍ତ୍ତୀ ଲେଖାରେ ଆଲୋଚିତ ହେବ ।

# ଜାତୀୟ ସ୍ୱାର୍ଥର ପରିପନ୍ଥୀ : ବ୍ୟାଙ୍କ ଘରୋଇକରଣ

ରାଷ୍ଟ୍ରାୟତ୍ତ ବ୍ୟାଙ୍କର ଅନାଦେୟ ଋଣ-ଛାଡ଼ିକି ? ବ୍ୟାଙ୍କ ଘରୋଇକରଣ ଆବଶ୍ୟକ ? ଏହି ଶୀର୍ଷକରେ ଦୁଇଟି ଆଲୋଚନା ପୂର୍ବରୁ ଏହି ସ୍ତମ୍ଭରେ କରିଛୁ ଓ କିପରି ଭାବରେ ବ୍ୟାଙ୍କରୁ ଋଣ ନେଇ ବଡ଼ ବଡ଼ ଔଦ୍ୟୋଗିକ ଅନୁଷ୍ଠାନମାନେ ଋଣ ପରିଶୋଧ ନକରି ତାକୁ ଅନାଦେୟ ଋଣରେ ପରିବର୍ତ୍ତନ କରିଦେଉଛନ୍ତି ଓ ଋଣ ଖିଲାପ କରୁଛନ୍ତି ତା'ର ଉଲ୍ଲେଖ କରିଥିଲୁ । ଏ ସମ୍ପର୍କରେ ବ୍ୟାଙ୍କ କର୍ମଚାରୀମାନେ କ୍ରମାଗତ ଭାବରେ ସେମାନଙ୍କର ସଂଗଠନ ଏ.ଆଇ.ବି.ଇ.ଏ. ନେତୃତ୍ୱରେ ସଂଗ୍ରାମ ଜାରି ରଖିଛନ୍ତି ଏବଂ ଗତ ମାର୍ଚ୍ଚ ୮ ତାରିଖରେ ପ୍ରାୟ ୩୦ ହଜାର ବ୍ୟାଙ୍କକର୍ମଚାରୀ ବିକ୍ଷୋଭ ପ୍ରଦର୍ଶନ କରି ରାଷ୍ଟ୍ରପତି ଶ୍ରୀ କେ.ଆର.ନାରାୟଣନ୍‌ଙ୍କୁ ଭେଟି ଏକ ସ୍ମାରକ ପତ୍ର ପ୍ରଦାନ କରିଛନ୍ତି । ଏହି ସ୍ମାରକ ପତ୍ରରେ ଯେଉଁମାନେ ୧କୋଟିରୁ ଅଧିକ ଟଙ୍କାର ଋଣ ଖିଲାପ କରିଛନ୍ତି, ତାହାର ତାଲିକା ଦିଆଯାଇଛି ।

୧୯୯୮ ମାର୍ଚ୍ଚ ୩୧ ତାରିଖ ସୁଦ୍ଧା ଯେଉଁ କେତୋଟି ବ୍ୟାଙ୍କରେ ଏକକୋଟିରୁ ଅଧିକ ଋଣ ଖିଲାପ ଏକାଉଣ୍ଟ ହୋଇଛି ତାହା ହେଲା ପଞ୍ଜାବ ନେସନାଲ ବ୍ୟାଙ୍କ - ୨୦୪, ପଞ୍ଜାବ ଓ ସିନ୍ଧ ବ୍ୟାଙ୍କ - ୬୯, ସିଣ୍ଡିକେଟ ବ୍ୟାଙ୍କ - ୭୫, ୟୁକୋ ବ୍ୟାଙ୍କ - ୧୨୦, ୟୁନିୟନ ବ୍ୟାଙ୍କ ଅଫ୍ ଇଣ୍ଡିଆ - ୯୭, ୟୁନାଇଟେଡ଼ ବ୍ୟାଙ୍କ ଅଫ୍ ଇଣ୍ଡିଆ - ୧୦୩, ବିଜୟା ବ୍ୟାଙ୍କ-୫୩, ଆଲାହାବାଦ ବ୍ୟାଙ୍କ - ୮୪, ଆନ୍ଧ୍ର ବ୍ୟାଙ୍କ - ୫୨, ବ୍ୟାଙ୍କ ଅଫ୍ ମହାରାଷ୍ଟ୍ର - ୭୦, କାନାରା ବ୍ୟାଙ୍କ - ୧୬୩, ସେଣ୍ଟ୍ରାଲ ବ୍ୟାଙ୍କ ଅଫ ଇଣ୍ଡିଆ - ୧୮୮, କର୍ପୋରେସନ୍ ବ୍ୟାଙ୍କ - ୧୮, ଦେନା ବ୍ୟାଙ୍କ - ୩୮, ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କ - ୭୬, ଓରିଏଣ୍ଟାଲ ବ୍ୟାଙ୍କ ଅଫ କମର୍ସ-୨୭ ଓ ଷ୍ଟେଟ୍ ବ୍ୟାଙ୍କ ଅଫ ଇଣ୍ଡିଆ - ୪୪୫ ।

ବ୍ୟାଙ୍କମାନଙ୍କର ଏହି ଅନାଦେୟ ଋଣକୁ ଆଦାୟ କରିବା ପାଇଁ ଡ଼େଟ୍ ରିକଭରି ଟ୍ରିବ୍ୟୁନାଲ ଗଠନ କରାଯାଇଥିଲେ ମଧ୍ୟ ମାର୍ଚ୍ଚ ୧୯୯୮ ଶେଷ ସୁଦ୍ଧା ପ୍ରାୟ ୬ଶହ ମଧ୍ୟରୁ ମାତ୍ର ୧୩୪ ଗୋଟି କେଶ୍ ଫଇସଲା ହୋଇ ୫୩.୫୮ କୋଟି ଟଙ୍କା ଆଦାୟ ହୋଇଛି । ଏହା ସମୁଦ୍ରକୁ ଶଙ୍ଖେ ।

କେବଳ ଜାତୀୟକରଣ ବ୍ୟାଙ୍କ ନୁହେଁ, ବରଂ ଘରୋଇ ବ୍ୟାଙ୍କଗୁଡ଼ିକରେ ଅନାଦେୟ ଋଣର ପରିମାଣ ମଧ୍ୟ ବଢ଼ିଚାଲିଛି । ନୂଆକରି ଗଠିତ ହୋଇଥିବା ଘରୋଇ ବ୍ୟାଙ୍କଗୁଡ଼ିକରେ ଅନାଦେୟ ଋଣର ପରିମାଣ ମଧ୍ୟ ବଢ଼ିଚାଲିଛି । ନୂଆକରି ଗଠିତ ହୋଇଥିବା ଘରୋଇ ବ୍ୟାଙ୍କରେ ଅନାଦେୟ ଋଣ ୨୭୦ କୋଟି ଟଙ୍କାରୁ ୮୭୦ କୋଟି ଟଙ୍କାକୁ ବୃଦ୍ଧି ପାଇଛି । ଏପରିକି ବିଦେଶୀ ବ୍ୟାଙ୍କରେ ଏହି ପରିମାଣ ୧୮୦୦ କୋଟିରୁ ୨୨୦୦କୋଟିରେ ପହଞ୍ଚିଛି । ନିମ୍ନଲିଖିତ ଟେବୁଲ୍‌ରୁ ବାସ୍ତବିକ ଅନାଦେୟ ଋଣର ହାର ବାସ୍ତବିକ ଋଣ ସହିତ ବିଭିନ୍ନ ବ୍ୟାଙ୍କରେ କେତେ ବୁଝାପଡ଼େ ।

| | ୧୯୯୬ | ୧୯୯୮ | ୧୯୯୯ |
|---|---|---|---|
| ବ୍ୟବସାୟିକ ବ୍ୟାଙ୍କ | ୮.୧ | ୭.୩ | ୭.୫ |
| ସରକାରୀ ଉଦ୍ୟୋଗ ବ୍ୟାଙ୍କ | ୯.୨ | ୮.୨ | ୮.୧ |
| ପୁରାତନ ଘରୋଇ ବ୍ୟାଙ୍କ | ୬.୬ | ୬.୫ | ୮.୪ |
| ନୂତନ ଘରୋଇ ବ୍ୟାଙ୍କ | ୨.୦ | ୨.୬ | ୪.୧ |
| ବିଦେଶୀ ବ୍ୟାଙ୍କ | ୧.୯ | ୨.୨ | ୨.୦ |

ସରକାରୀ ଉଦ୍ୟୋଗ ବ୍ୟାଙ୍କଗୁଡ଼ିକର ଅନାଦେୟ ଋଣ ହେବା ମୂଳରେ କର୍ମଚାରୀମାନଙ୍କ ଦ୍ୱାରା ଖରାପ ଗ୍ରାହକ ସେବା, ଦକ୍ଷତାର ଅଭାବ ଏବଂ ଅତ୍ୟଧିକ କର୍ମଚାରୀ କାରଣ ଭାବେ ଦର୍ଶାଯାଉଥିବାବେଳେ ଘରୋଇ ଓ ବିଦେଶୀ ବ୍ୟାଙ୍କ୍‌ରେ ଅନାଦେୟ ଋଣ ବଢ଼ିବାର କାରଣ ଭାବେ ଅର୍ଥନୀତିରେ ମାନ୍ଦାବସ୍ଥା, ପ୍ରତଯୋଗିତା ପରିବେଶରେ ବ୍ୟାଙ୍କମାନଙ୍କର ଦ୍ରୁତ ଅଭିବୃଦ୍ଧି ପାଇଁ ଚେଷ୍ଟା, ବିପଦପୂର୍ଣ୍ଣ ପରିଚାଳନାର ଅଭାବ, ସେମାନଙ୍କର ମୂଳ ସମ୍ପତ୍ତି ବୃଦ୍ଧିପାଇଁ ଆଗ୍ରହ, ଉଦ୍ୟୋଗଗୁଡ଼ିକ ଋଣଦେବା କ୍ଷେତ୍ରରେ ସେମାନଙ୍କର ସଠିକ୍ ନିର୍ଣ୍ଣୟ କରିନପାରିବା ଇତ୍ୟାଦି ଅନ୍ତର୍ଭୁକ୍ତ ।

ସରକାରୀ ଉଦ୍ୟୋଗ ହେଉ, ଘରୋଇ ବା ବିଦେଶୀ ବ୍ୟାଙ୍କ ହେଉ ସବୁଠି ବ୍ୟାଙ୍କ ଖିଲାପକାରୀ ସମାନ ଥିବାବେଳେ, କେବଳ ରାଷ୍ଟ୍ରାୟତ୍ତ ବ୍ୟାଙ୍କକୁ ଦୋଷଦେବା ଓ ଅନାଦେୟ ଋଣ ଆଦାୟ କରିବାପାଇଁ କୌଣସି କାର୍ଯ୍ୟାନୁଷ୍ଠାନ ନକରିବାକୁ କ'ଣ ଆମେ ଜାତୀୟ ସ୍ୱାର୍ଥର ସୁରକ୍ଷା ବୋଲି କହିପାରିବା ?

ବର୍ତ୍ତମାନ ସରକାର ଚିନ୍ତା କରୁଛନ୍ତି, ବ୍ୟାଙ୍କିଙ୍ଗ ରେଗୁଲେସନ ଆକ୍ଟକୁ ସଂଶୋଧନ କରି ସରକାରଙ୍କର ଥିବା ୫୧ ପ୍ରତିଶତ ଅଂଶଧନ ୩୩ ପ୍ରତିଶତ ଅଂଶଧନକୁ କମାଇଦେବା । ଏହାଦ୍ୱାରା ରାଷ୍ଟ୍ରାୟତ୍ତ ବ୍ୟାଙ୍କଗୁଡ଼ିକ କିପରି ସରକାରୀ କର୍ତ୍ତୃତ୍ୱରେ ରହିପାରିବ, ତାହା ବୁଝା ପଡୁନାହିଁ । ରାଷ୍ଟ୍ରାୟତ୍ତ ବ୍ୟାଙ୍କ ଓ ଘରୋଇ ବ୍ୟାଙ୍କ ମଧ୍ୟରେ ରହିଥିବା ପ୍ରାଥମିକ ସୁଧର ହାରରେ (ପିଏଲଆର୍) କିପରି ପାର୍ଥକ୍ୟ ରହିଛି, ତାହା ନିମ୍ନ ଟେବୁଲ୍‌ରୁ ଜଣାପଡ଼େ । ଏହା କେବଳ ଉଦ୍ୟୋଗଗୁଡ଼ିକ ପାଇଁ ପ୍ରଜୁଜ୍ୟ ହେବାବେଳେ ଅଗ୍ରାଧିକାର କ୍ଷେତ୍ରର ଋଣ ପାଇଁ ପ୍ରଯୁଜ୍ୟ ନୁହେଁ । ଏହି ଋଣର ସୁଧ ହାର କେତେ ତାହା ନିମ୍ନ ଟେବୁଲ (୧)ରୁ ଦେଖିବା :

ଜମା ଅର୍ଥ ଉପରେ ସୁଧର ହାର ମଧ୍ୟ ବିଭିନ୍ନ ବ୍ୟାଙ୍କ୍‌ର ଅଳ୍ପ ତାରତମ୍ୟ । ତଥାପି ବିଦେଶୀ ଓ ଘରୋଇ ବ୍ୟାଙ୍କମାନଙ୍କର ଲାଭାଂଶ ବେଶୀ ।

ଏସବୁ ସତ୍ତ୍ୱେ ମଧ୍ୟ ରାଷ୍ଟ୍ରାୟତ୍ତ ଉଦ୍ୟୋଗରେ ଥିବା ବ୍ୟାଙ୍କଗୁଡ଼ିକର ଲାଭ କେତେ ହୋଇଛି ତାହା ମଧ୍ୟ ଦେଖିବା । କାରଣ ଏତେଲାଭ ସତ୍ତ୍ୱେ ଏବଂ ଅନାଦେୟ ଋଣ ୫୮ ହଜାରକୋଟି ଟପିଥିବାବେଳେ ରାଷ୍ଟ୍ରାୟତ୍ତ ବ୍ୟାଙ୍କକୁ ଘରୋଇକରଣ କରିବା କିମ୍ବା ସରକାରୀ ଅଂଶଧନକୁ ୩୩ ଭାଗକୁ ପ୍ରତ୍ୟାହାର କରିନେବାର କୌଣସି ଅର୍ଥ ନଥାଏ ଏବଂ ଏହା ନିଶ୍ଚିତ ଭାବରେ ଦେଶର ଆର୍ଥିକ ହିତ ଦୃଷ୍ଟିରୁ ନୁହେଁ ।

ବିଭିନ୍ନ ରାଷ୍ଟ୍ରାୟତ୍ତ ବ୍ୟାଙ୍କର ଲାଭର ପରିମାଣ ତାହା ନିମ୍ନ ଟେବୁଲ (୨)ରେ ଦିଆଗଲା ।

ଉପରୋକ୍ତ ତଥ୍ୟଗୁଡ଼ିକୁ ଅନୁଧ୍ୟାନ କଲେ ଦେଖାଯାଏ ଯେ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ବ୍ୟାଙ୍କଗୁଡ଼ିକ ସବୁଦୃଷ୍ଟିରୁ ଜାତୀୟ ସ୍ୱାର୍ଥକୁ ସୁରକ୍ଷା କରି ଅର୍ଥନୀତିର ଉନ୍ନତି ପାଇଁ ସାହାଯ୍ୟ କରୁଥିବାବେଳେ ତାକୁ ରୁଗ୍‌ଣ ଓ ଦୁର୍ବଳ ବୋଲି ତା' ଉପରେ ଛାପମାରି ଦେବାର କୌଣସି ଯଥାର୍ଥତା ନାହିଁ । ବ୍ୟାଙ୍କଗୁଡ଼ିକୁ ଘରୋଇକରଣ କରାଗଲେ ଏହା ସାଧାରଣ ଲୋକଙ୍କର ସାହାଯ୍ୟରେ ଆସିବ ନାହିଁ । ଲୋକମାନଙ୍କର ଜମା ଅର୍ଥ ବ୍ୟାଙ୍କରେ ସଂଗୃହୀତ ହୋଇ ରହୁଛି । ସରକାର ଯଦି ଉତ୍ତମନ୍ୟାସୀ ନହୋଇପାରିବେ, ତେବେ ରାମା, ଦାମା, ଶାମା କ'ଣ ଜମା ଟଙ୍କାର ସୁରକ୍ଷା କରିପାରିବେ ?

ଭାରତର ଶତକଡ଼ା ୪୦ ଭାଗ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ଅଛନ୍ତି, ୫୦ ଭାଗ ଲୋକ ସାକ୍ଷର ନୁହଁନ୍ତି । ଲୋକଙ୍କ ନିକଟରେ ଯେଉଁ ସ୍ୱଳ୍ପ ଜମା ରହିଛି, ତା'ର ସୁରକ୍ଷା ଦାୟିତ୍ୱ ସରକାର ନେବା ଉଚିତ୍ । ଘରୋଇ ବ୍ୟାଙ୍କ ହାତରେ ସାଧାରଣ ଲୋକମାନଙ୍କର ସ୍ୱଳ୍ପ ଜମା ସୁରକ୍ଷିତ ନୁହେଁ । ରାଷ୍ଟ୍ରାୟତ୍ତ ବ୍ୟାଙ୍କର ବିକଳ୍ପ ନାହିଁ । ବ୍ୟାଙ୍କ ରାଷ୍ଟ୍ରାୟତ୍ତ କରିବା ଥିଲା ଏକ ପ୍ରଗତିଶୀଳ ପଦକ୍ଷେପ । ଏହି ପଦକ୍ଷେପ ଭାରତୀୟ ଅର୍ଥନୀତିର ବିକାଶ ପାଇଁ ଯେଉଁ ମୂଳଭିତ୍ତି ସ୍ଥାପନ କରିଛି, ତାହାର ପଶ୍ଚାଦ୍‌ଗମନ ଆମର ଜାତୀୟ ସ୍ୱାର୍ଥର ପ୍ରତିକୂଳ ନୁହେଁ କି ?

## ଟେବୁଲ୍ (୧)

| ରାଷ୍ଟ୍ରାୟତ୍ତ ବ୍ୟାଙ୍କ | ସୁଧର ହାର | ଘରୋଇ ବ୍ୟାଙ୍କ | ସୁଧର ହାର |
|---|---|---|---|
| ଆଲାହାବାଦ ବ୍ୟାଙ୍କ | ୧୩.୦୦ | ସେଞ୍ଚୁରିଆନ୍ ବ୍ୟାଙ୍କ | ୧୩.୫୦ |
| ଆନ୍ଧ୍ର ବ୍ୟାଙ୍କ | ୧୩.୫୦ | ସିଟି ୟୁନିୟନ ବ୍ୟାଙ୍କ | ୧୩.୫୦ |
| ବ୍ୟାଙ୍କ ଅଫ୍ ବରୋଦା | ୧୨.୦୦ | ଗ୍ଲୋବାଲ ଟ୍ରଷ୍ଟ ବ୍ୟାଙ୍କ | ୧୬.୦୦ |
| ବ୍ୟାଙ୍କ ଅଫ୍ ମହାରାଷ୍ଟ୍ର | ୧୩.୫୦ | ଏଚ.ଡ଼ି.ଏଫ୍.ସି. ବ୍ୟାଙ୍କ | ୧୬.୦୦ |
| କାନାରା ବ୍ୟାଙ୍କ | ୧୩.୦୦ | ଆଇସିଆଇସିଆଇ ବ୍ୟାଙ୍କ | ୧୩.୫୦ |
| ସେଣ୍ଟ୍ରାଲ ବ୍ୟାଙ୍କ ଅଫ ଇଣ୍ଡିଆ | ୧୨.୫୦ | ଆଇଡ଼ିବିଆଇ ବ୍ୟାଙ୍କ | ୧୪.୫୦ |
| କର୍ପୋରେସନ୍ ବ୍ୟାଙ୍କ | ୧୨.୦୦ | ଇଣ୍ଡସ୍ ଇଣ୍ଡ ବ୍ୟାଙ୍କ | ୧୩.୦୦ |
| ଦେନା ବ୍ୟାଙ୍କ | ୧୨.୭୫ | ଜାମ୍ମୁକାଶ୍ମୀର ବ୍ୟାଙ୍କ | ୧୨.୫୦ |
| ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କ | ୧୩.୦୦ | ଟାଇମ୍‌ସ ବ୍ୟାଙ୍କ | ୧୪.୦୦ |
| ଓରିଏଣ୍ଟାଲ ବ୍ୟାଙ୍କ ଅଫ୍ କମର୍ସ | ୧୨.୦୦ | ୟୁଟିଆଇ ବ୍ୟାଙ୍କ | ୧୫.୫୦ |
| **ରାଷ୍ଟ୍ରାୟତ୍ତ ବ୍ୟାଙ୍କ** | | **ବିଦେଶୀ ବ୍ୟାଙ୍କ** | |
| ପଞ୍ଜାବ ନାସନାଲ ବ୍ୟାଙ୍କ | ୧୨.୫୦ | ଏବିଏନ୍ ଆମ୍ରୋ ବ୍ୟାଙ୍କ | ୧୬.୦୦ |
| ଷ୍ଟେଟ ବ୍ୟାଙ୍କ ଅଫ ଇଣ୍ଡିଆ | ୧୨.୦୦ | ଆମେରିକାନ୍ ଏକ୍ସପ୍ରେସ | ୧୬.୫୦ |

| | | | |
|---|---|---|---|
| ସିଣ୍ଡିକେଟ ବ୍ୟାଙ୍କ | ୧୩.୦୦ | ଏଏନଜେଡ଼ ଗ୍ରିଣ୍ଡଲେଜ | ୧୫.୫୦ |
| ୟୁନିୟନ ବ୍ୟାଙ୍କ ଅଫ ଇଣ୍ଡିଆ | ୧୩.୫୦ | ଷ୍ଟାଣ୍ଡାର୍ଡ଼ ଚାର୍ଟାର୍ଡ଼ | ୧୬.୫୦ |

## ଟେବୁଲ - (୨)

| ବ୍ୟାଙ୍କର ନାମ | ନେଟ୍ ଲାଭ ୧୯୯୭-୯୮ | ନେଟ୍ ଲାଭ ୧୯୯୮-୯୯ | ବୃଦ୍ଧି/କମ୍‌ର ପରିମାଣ |
|---|---|---|---|
| ଆଲାହାବାଦ ବ୍ୟାଙ୍କ | ୧୨୯.୨୦ | ୧୩୫.୦୦ | +୫.୮ |
| ଆନ୍ଧ୍ର ବ୍ୟାଙ୍କ | ୭୫.୨୪ | ୯୦.୦୪ | +୧୪.୮ |
| ବ୍ୟାଙ୍କ ଅଫ୍ ବରୋଦା | ୪୬୧.୩୪ | ୪୨୧.୪୪ | -୩୯.୯ |
| ବ୍ୟାଙ୍କ ଅଫ ଇଣ୍ଡିଆ | ୩୬୪.୫୦ | ୨୦୧.୧୪ | -୧୬୩.୩୬ |
| ବ୍ୟାଙ୍କ ଅଫ୍ ମହାରାଷ୍ଟ୍ର | ୫୬.୨୯ | ୫୧.୮୯ | -୪.୪ |
| କାନାରା ବ୍ୟାଙ୍କ | ୨୦୩.୦୨ | ୨୨୫.୦୬ | +୨୨.୪ |
| ସେଣ୍ଟ୍ରାଲ ବ୍ୟାଙ୍କ ଅଫ ଇଣ୍ଡିଆ | ୧୭୪.୮୯ | ୧୪୬.୨୪ | -୨୮.୬୫ |
| କର୍ପୋରେସନ ବ୍ୟାଙ୍କ | ୧୬୬.୮୬ | ୧୯୨.୦୩ | +୨୫.୧୭ |
| ଦେନା ବ୍ୟାଙ୍କ | ୧୦୫.୦୪ | ୧୧୦.୦୮ | +୫.୦୪ |
| ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କ | ୧୧୩.୦୫ | ୫୫.୩୩ | -୫୭.୭୨ |
| ଓରିଏଣ୍ଟାଲ ବ୍ୟାଙ୍କ ଅଫ୍ କମର୍ସ | ୨୧୦.୦୦ | ୨୩୦.୧୨ | +୨୦.୧୨ |
| ପଞ୍ଜାବ ଆଣ୍ଡ ସିନ୍ଧ ବ୍ୟାଙ୍କ | ୬୫.୦୯ | ୬୦.୪୪ | -୪.୬୫ |
| ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ | ୪୭୭.୩୫ | ୩୭୨.୧୨ | -୧୦୫.୨୩ |
| ସିଣ୍ଡିକେଟ ବ୍ୟାଙ୍କ | ୮୨.୬୫ | ୧୪୨. ୫୮ | +୫୯.୯୩ |



